କୃଷ୍ଣସିଂହ

# ମହାଭାରତ

# ନୀତି-ସଂଗ୍ରହ

—∞—

ବୋଇରାଣି ସବ୍‌ରେଜେଷ୍ଟ୍ରାର

**ଶ୍ରୀ ଭାଗୀରଥି ସାହୁଙ୍କ**

ଦ୍ୱାରା

ସଂଗୃହୀତ ଓ ପ୍ରଥମବାର ପ୍ରକାଶିତ

ମୂଲ୍ୟ ଥରେ ମାତ୍ର

ମନଯୋଗ ସହିତ ପାଠ

୧୯୩୪

କୃଷ୍ଣସିଂହ

# ମହାଭାରତ

# ନୀତି-ସଂଗ୍ରହ

ବୋଇରାଣି ସବ୍‌ରେଜିଷ୍ଟ୍ରାର

**ଶ୍ରୀ ଭଗୀରଥି ସାହୁଙ୍କ**

ଦ୍ୱାରା

ସଂଗୃହୀତ ଓ ପ୍ରଥମବାର ପ୍ରକାଶିତ

ମୂଲ୍ୟ ଥରେ ମାତ୍ର

ମନୋଯୋଗ ସହିତ ପାଠ

୧୯୩୦

# ନିବେଦନ

ଇଙ୍ଗ୍ରାଜୀରେ 'One Thousand and One Sayings,' ଶ୍ରୀ ରାମକୃଷ୍ଣ ସଂପ୍ରଦାୟର ଏବଂ ସ୍ୱାମୀ ଶ୍ରୀ ରାମତୀର୍ଥଙ୍କର ଗ୍ରନ୍ଥମାନ ପଢ଼ି, ସେଥିରେ ଯେଉଁ ସବୁ ନୀତି ବଚନ ଗୁଡ଼ିକ ଦେଖିଥିଲି ରାଜା ଶ୍ରୀ କୃଷ୍ଣସିଂହଙ୍କ ମହାଭାରତ ପାଠ କଲାବେଳେ ସେହି ନୀତି ବଚନ ଗୁଡ଼ିକ ଦେଖିବାକୁ ପାଇ, ମୋ ନିଜର ଅବସର ସମୟରେ ପାଠ କରିବା ନିମିତ୍ତ ସେଥିରୁ କେତେକ ଏକତ୍ର କରିଥିଲି । ଏ ମଧ୍ୟରେ ମୋର କେତେକ ବନ୍ଧୁ ଏବଂ ବିଶେଷତଃ ବୋଇରାଣୀ ମଧ୍ୟ ଇଙ୍ଗ୍ରାଜୀ ସ୍କୁଲର ଶିକ୍ଷକଗଣ ଓ ପଣ୍ଡିତ ମହାଶୟ ଏହି ନୀତି ବଚନ ଗୁଡ଼ିକ ଦେଖି ତାହା ବହି ଆକାରରେ ସାଧାରଣଙ୍କ ଆଗେ ଉପସ୍ଥାପିତ କରିବା ପାଇଁ ମୋତେ ଉତ୍ସାହିତ କଲେ । ମୋର ନିଜସ୍ୱ ଏଥିରେ କିଛି ନାହିଁ ।

ତେଣୁ ପାଠକବର୍ଗଙ୍କୁ ଅନୁରୋଧ କରେ ଏଥିରେ ଯଦି କୌଣସି ପ୍ରକାର ତ୍ରୁଟି ଥାଏ ତେବେ ତାହା ମାର୍ଜନା କରିବେ । ମହାଭାରତ ନୀତିବାକ୍ୟ ଏବଂ ସଦୁପଦେଶରେ ପରିପୂର୍ଣ୍ଣ । ମୁଁ ସେଥିରୁ କେତେକ ମାତ୍ର ସଂଗ୍ରହ କରିଅଛି । ଯଦି ଏହାର ଉପାଦେୟତା ସାଧାରଣଙ୍କ ମଧ୍ୟରେ ଅନୁଭୂତ ହୁଏ ତେବେ ଅନ୍ୟାନ୍ୟ ଅଂଶ ସଂଗ୍ରହ କରି ଯଥା ଶୀଘ୍ର ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାର ବାସନା ରହିଲା ।

ଭଗବତ୍‌ଗୀତାର ଯେଉଁ ଯେଉଁ ଅଂଶ ଏଥିରେ ସ୍ଥାନ ପାଇଅଛି, ସେଠାରେ 'ମୁଁ' ଠାରେ ଶ୍ରୀକୃଷ୍ଣ ଏବଂ ଅନ୍ୟତ୍ର 'ମୁଁ' 'ତୁମ୍ଭେ' ଅର୍ଥରେ ଯଥାକ୍ରମେ ବକ୍ତା ଏବଂ ଶ୍ରୋତା ବୋଲି ଗ୍ରହଣ କରିବାକୁ ହେବ ।

ବୋଇରାଣି (ଗଞ୍ଜାମ)
୧୪-୧-୧୯୩୪

ବିନୀତ
ଶ୍ରୀ ଭାଗୀରଥ ସାହୁ

ଓଁ ନମୋ ନାରାୟଣାୟ

# ମହାଭାରତ ନୀତି ସଂଗ୍ରହ

ହିଂସା ନ କରିବ ପ୍ରାଣିମାନଙ୍କରେ ।
ଏ ପରମ ଧର୍ମ ଅଟଇ ସଂସାରରେ । ୧ ।

ଧର୍ମକୁ ଯେଉଁ ଲୋକ କରଇଟି ନାଶ ।
କହୁଥାଇ ଅଗଟି ସେ ହୁଏ ବିନାଶ । ୨ ।

ଜନ୍ମ ଦାତା, ଅନ୍ନ ଦାତା, ପ୍ରାଣ ଦାତା ।
ଏହି ମାନେ ଜାଣ ପ୍ରାଣିଙ୍କର ପିତା । ୩ ।

ଯେଉଁ ଲୋକ ସତ କଥାକୁ ମିଛ କରେ
କେଉଁ ପାପ କଥା ନ ହଇ ତାହାରେ । ୪ ।

ହୃଦୟରେ ଯେଉଁ ପୁରୁଷ ରହନ୍ତି ।
ତୁମ୍ଭ ଅମ୍ଭ କଥାକୁ ସାକ୍ଷୀ ସେ ହୋଇନ୍ତି ।
ଯେବେ ଲୋକ ଲୁଚଇ ପାପକୁ କରଇ ।
ତାହାକ ନାରାୟଣ ପୁରୁଷ ନ ଜାଣଇ ? । ୫ ।

ସୂର୍ଯ୍ୟ, ଯମ, ଧର୍ମ, ଧରଣୀ, ଅନିଳ ।
ଦିବସ, ରାତ୍ରି, ଜଳ, ଆକାଶ, ଅନଳ ।
ଦୁଇ ସନ୍ଧ୍ୟା, ହୃଦୟ, ନକ୍ଷତ୍ରଗଣ-ପତି ।
ଏ ଚଉଦେ ନର ବୃତ୍ତକୁ ଜାଣନ୍ତି । ୬ ।

ହୃଦ ସ୍ଥିତ ପୁରୁଷ ଯାହାକୁ ତୁଷ୍ଟ ଏ ତୋଷ ।
ଯମ ଦଣ୍ଡ ତାର ନ ହୁଇ ଅବଶ୍ୟ । ୭ ।
ଡରିବା ତଥି ନାହିଁ ବୋଲଇ ଯେତୁଁ ନର ।
ନ କରନ୍ତି ଦେବେ ଶ୍ରେୟ ଯେ ତାହାର । ୮ ।
ଦୁଷ୍ଟ ଜନେ ନିନ୍ଦା କରନ୍ତି ପରକୁ ।
ନ ଜାଣନ୍ତି ସାଧୁ ଅସାଧୁ ବଚନକୁ । ୯ ।
ମୂର୍ଖ ଜନେ ଭଲ ଅସାର ଶୁଣନ୍ତି ।
ଭଲ ଛାଡ଼ି ଦେଇ ଅସାର ଘେନନ୍ତି ।
ପ୍ରାଜ୍ଞ ଜନେ ଭଲ ଅସାର ଶୁଣିଲେ ।
ଅସାର ଛାଡ଼ି ଭଲ ଘେନନ୍ତି ହୃଦେ ଭଲେ ।
ହଂସ କ୍ଷୀର ନୀରୁ ଘେନନ୍ତି ପର କ୍ଷୀର ।
ଗୁଣ ଯୁକ୍ତ ବାକ୍ୟକୁ ଘେନନ୍ତି ସଜ୍ଜନର । ୧୧
ସାଧୁଜନ ପରକୁ ନିନ୍ଦିଲେ କରେ ଦୁଃଖ ।
ଦୁଷ୍ଟଜନ ପରକୁ ନିନ୍ଦିଲେ ପାଏ ସୁଖ । ୧୨ ।
ମୂର୍ଖ ଜନେ ଭଲ ମନ୍ଦ ତ ନ ଜାଣନ୍ତି ।
ମହା ସୁଖେ ବସି ଜନକୁ ହସନ୍ତି ।
ପର ଯେବେ ତାଙ୍କର ବାଛଇ ଦୋଷଗୁଣ ।
ସେହି ସେହିରୂପେ ହସନ୍ତି ବଖାଣ ।
ନିଜେ ହୋଇ ଦୁର୍ଜନ କେତେ ଲୋକମାନେ ।
ସଜ୍ଜନକୁ ଦୁର୍ଜନ ବୋଲନ୍ତି ବଚନେ । ୧୩ ।
ସତ୍ୟ ଧର୍ମ ଚ୍ୟୁତ ଯେ ଜନ ହୋଇଥାଏଁ ।
ନାସ୍ତିକକୁ ମଧ୍ୟ ସେ ଉଦବେଗ ହଏ । ୧୪ ।

ସତ୍ୟରୁ ଶ୍ରେଷ୍ଠତର ଅନ୍ୟ କିଛି ନାହିଁ ।
ମିଥ୍ୟାରୁ ବଳି ପାପ ଅଛି ଅବା କାହିଁ । ୧୫ ।
ସର୍ବ ପ୍ରାଣୀଠାରେ ମନରେ ବଚନରେ ।
କାର୍ଯ୍ୟରେ ଯେଉଁ ଜନ ପାପକୁ ନକରେ ।
ବ୍ରହ୍ମତ୍ୱ ସେ ଜନକୁ ହୁଅଇ ପରାପତ ।
ଏକଥା ସବୁ ଋଷି ମତରେ ସମ୍ମତ । ୧୬ ।
ଯେଉଁ ଜନ ଜନକୁ ଭୟ ନଦଅଇ ।
ପରଜନଠାରୁ ଭୟକୁ ନପାଇ ।
କାହାଠାରେ କିଛି ନ କରଇ ଦ୍ୱେଷ ।
ତେବେତ ମୋକ୍ଷ ତାକୁ ହୁଅଇ ଅବନାଶ । ୧୭ ।
ବିଦ୍ୟା ପାଇ ଗୁରୁଙ୍କୁ ଆଦର ଯେ ନ କରେ ।
ପ୍ରତିଷ୍ଠା ନାଶ କରି ପଡ଼ଇ ନରକରେ । ୧୮ ।
ଯେ ଜନ ପରନିନ୍ଦା ବଚନ ସହଇ ।
ଇନ୍ଦ୍ରଲୋକ ଯାଇ ସେ ଧର୍ମରେ ଜିଣଇ ।
ଯେଉଁ କ୍ରୋଧ ନିଜ ହୃଦରେ ଜାତ ହୁଏ ।
ଘୋଡ଼ାକୁ ବାଗଧରି ରଖିବା ପରାୟେ ।
ସେ କ୍ରୋଧକୁ ଯେ ଜନ କରଇ ନିବାର ।
ଯନ୍ତା ବୋଲି ତାହାକୁ ବୋଲନ୍ତି ନର । ୧୯ ।
ଯେଉଁ ଜନ କ୍ରୋଧକୁ ସର୍ପକାତି ପ୍ରାୟେ ।
ନ ରଖି ହୃଦପୁରେ ଅଲଗା କରି ଦିଏ ।
ସେହି ଜନକୁ ପୁରୁଷ ବୋଲି କହି ।
ମୋହଠାରୁ ଏବେ ଶୁଣିଆଅ ତୁହି । ୨୦ ।

ବାଳକମାନେ ଯେଉଁ ଦ୍ୱନ୍ଦ୍ୱ ଆରମ୍ଭନ୍ତି ।
ଜାଣିବା ଲୋକେ ତାହା ମନକୁ ନ ଆଣନ୍ତି । ୨୧ ।
ହୋଇଥିବ ଯେ ଜନ ସମ୍ପତ୍ତିରେ ନାଶ ।
କରିଥିବ ପଚ୍ଛୁ ସମ୍ପତ୍ତିର ଆଶ ।
ଏଥିରୁ ହୀନ ହୋଇ ଜନ ଜଗତରେ ।
ଖୋଜିଲେ ତ ନଥିବ ଝଥାଏ ବସ୍ତୁରେ ।
ଅଧର୍ମ ଆଚରଣ ଯେ ଅବା କରଇ ।
ତହିଁରେ ଫଳକାଳ ପ୍ରାପତ ହୁଅଇ । ୨୨ ।
ପୃଥ୍ୱୀରେ ମଞ୍ଜି ଯେବେ ପୋତି ଦେଇ ସ୍ୱୟେ ।
କ୍ରମରେ ବୃକ୍ଷ ହୋଇ ଫଳ-ଦାୟୀ ହୁଏ ।
ସେ ରୂପରେ ଅଧର୍ମ ଦାନବ କୁଳ ପତି ।
ଅପଣା ଠାରେ ଫଳ ନୋହିଲେ ପ୍ରାପତି ।
ପୁଅ ନାତିରେ ତା ଅବଶ୍ୟ ଫଳଇ ।
ଏ ବିଷୟରେ ନୃପ ସନ୍ଦେହ କିଛି ନାହିଁ । ୨୩ ।
ମିଥ୍ୟାକୁ ଆଚରଣ କରଇ ଯେଉଁ ନର ।
ସେହିଟି ହେ ନୃପତି ଅଟଇ ଧର୍ମଚୋର । ୨୪ ।
ମାତାପିତା ବଚନ କରଇଟି ଯେହୁ ।
ପୁତ୍ର ବୋଲିକରି ତାହାକୁଟି କହୁ । ୨୫ ।
ଯେଉଁ ପୁତ୍ର ପିତାମାତାର ହିତକାରୀ ।
କନିଷ୍ଠ ହେଲେ ଜ୍ୟେଷ୍ଠ ନୁହେ ତାକୁ ସରି । ୨୬ ।
ସଜ୍ଜନକୁ ଅସଜ୍ଜନ ଅଟେ ଊଣା ।
ଜାଣ ମୋ କହିବାକୁ ନୋହିଥିଲେ ଜଣା । ୨୭ ।

ଇତର ପ୍ରାଣୀଠାରୁ ମନୁଷ୍ୟ ପ୍ରଧାନ ।
ଅପଣ୍ଡିତଙ୍କୁ ପଣ୍ଡିତ ଶ୍ରେଷ୍ଠ ଜନ । ୨୮ ।
ଯେ ଗାଳି ଦେବ ତାକୁ ଏ ଗାଳି ନ ଦେବ ।
ଗାଳି ଦେବା ଲୋକ ସ୍ୱକ୍ରୋଧେ ନାଶଯିବ । ୨୯ ।
ଅପକୃଷ୍ଟ ନୀଚ ଉପାୟ ପ୍ରଭାବେ ।
ଶତ୍ରୁଙ୍କୁ ବଶୀଭୂତ ନକରିବ କେବେ । ୩୦ ।
ପରଙ୍କୁ ଉପଦେଶ ଦେଇ ଯେଉଁ ନର ।
ନରକରେ ନିବାସ ହୁଅଇ ତାହାର । ୩୧ ।
ଯେ ରୂପେ ଅଗେ ପଛେ ସାଧୁଜନମାନେ ।
କରୁଥିବେ ପ୍ରଶଂସା ବସି ଅବଚ୍ଛିନ୍ନେ ।
ତହିଁ ର ଜଗି ଆଚରଣ କରୁଥିବ ।
ବଳଥାଇ ତାଙ୍କ କଥାକୁ ନ ଯିବ । ୩୨ ।
କାଣ୍ଡ ଅଙ୍ଗେ ବାଜିଲେ ଖଣେ ଦୁଃଖ ହୁଏ ।
ବଚନ କାଣ୍ଡ ସବୁବେଳେ ଦୁଃଖ ଦିଏ ।
ଏଣୁକରି ଯେ ଜନ ଜାଣିବାର ହେବ ।
ବଚନ·କାଣ୍ଡ ପରଜନଙ୍କୁ ନ ବିନ୍ଧିବ । ୩୩ ।
ଦୟା, ଦାନ, ମଇତ୍ରୀ, ମଧୁର-ବଚନ ।
ଯାହାରେ ଅଛି ତାର ସମସ୍ତେ ଅଧୀନ । ୩୪ ।
କହୁଥିବ ସବୁବେଳେ ପ୍ରିୟ କଥା ।
ନିଷ୍ଠୁର ବଚନକୁ ତିଳେ ନ କହିବ ।
ପୂଜ୍ୟ ଲୋକମାନଙ୍କୁ ପୂଜା କରୁଥିବ ।
ଥିଲେ ଦେବ, ନ ଥିଲେ ତାହାକୁ ନ ମାଗିବ । ୩୫ ।

ନର ଲୋକେ ଲୋକ ହୋଇଲେ ଦ୍ରବ୍ୟହୀନ ।
ଯେ ରୂପେ ତାକୁ ଛାଡ଼ିଯାନ୍ତି ସବୁଜନ ।
ସେ ରୂପେ କ୍ଷୀଣ ପୁଣ୍ୟ ହୋଇଲେ ସ୍ୱର୍ଗରେ ।
ଛାଡ଼ନ୍ତି ଦେବତାଏ ତାହାଙ୍କୁ ସତ୍ୱରେ । ୩୬ ।
ପାକ ପାଇଁ ଅଗ୍ନି ନ କରେ ସଂଗ୍ରହ ।
ଘରେ ରହିବାରେଁ ନ କରଇ ସ୍ନେହ ।
କୁଳ ଅଗ୍ରଭଣ ପ୍ରକାଶ ନ କରଇ ।
ଗୁହ୍ୟଦେଶ ମାତ୍ର ବସନେ ଘୋଡାଇ ।
ପ୍ରାଣ ରକ୍ଷା ପାଇଁ କରଇ ଭୋଜନ ।
ଏପରି ଗ୍ରାମେ ଥିବା ଲୋକର ପ୍ରଶସ୍ତ ବନ । ୩୭ ।
ଯେଉଁ ମୁନି ସବୁ କର୍ମକୁ ଛାଡ଼ଇ ।
ଜିତେନ୍ଦ୍ରିୟ ହୋଇ ମଉନେ ରହଇ ।
ସେହିଟିଏ ଲୋକରେ ପ୍ରତିଷ୍ଠା ପାଏ ।
ଏହା କହନ୍ତି ସମସ୍ତ ଋଷିଏ । ୩୮ ।
ଦାନ୍ତ ଘଷି, ନଖ ମୁଣ୍ଡି ସ୍ନାନ କରି ।
ଦଣ୍ଡ କମଣ୍ଡଳୁ ଅବ ଚର୍ମ ଧରି ।
ତପସ୍ୟାରେ କ୍ଷୀଣ କରଣ ଅପଘନ ।
ସହୁ ଥାଏ ଶୀତ ଅତପ ପବନ ।
ଅଭ୍ୟସ୍ତ କରିଥାଏ ମଉନ ବ୍ରତକୁ ।
ଜିଣଇ ସେ ମୁନି ଏ ତିନି ଲୋକକୁ । ୩୯ ।
ଗ୍ରାମନ୍ତରର ବହୁତ ଗୃହସ୍ଥ ଥାନ୍ତି ରହି ।
ବୃଦ୍ଧ ନ ଇଚ୍ଛାରେ ତହିଁରେ ଯେ ଥାଇ ।

ଇଚ୍ଛାଗ୍ରସ୍ତ ଲୋକର ସଙ୍ଗରେ ସଙ୍ଗ ନୋହୁ ।
ଗ୍ରାମେ ଥିଲେ ଶ୍ରେଷ୍ଠ ବୋଲି ଜାଣ ସେହୁ । ୪୦ ।
ପୂର୍ଣ୍ଣ ହୋଇ ଅସ୍ପୃ ନୋହୁ ଥିବ ଭୋଗ ।
ଏ ଭାଳେ ଆଚରିଲେ ଅଧରମ ଲାଗ ।
ପଶ୍ଚାତ୍ତାପ କରି ତପସ୍ୟା କରିବ ।
ତେବେ ଆଶ୍ରମେ ଥିବା ଯତି ମୁକ୍ତ ହେବ । ୪୧ ।
ଯେଉଁ ଲୋକ ଫଳ ଇଚ୍ଛା ନ କରଇ ।
ଅହର୍ନିଶି ବିହିତ ଧର୍ମ ଆଚରଇ ।
ଧନ ଥିଲେ ଧନରେ ପ୍ରମତ୍ତ ନ ଥାଏ ।
ସାମର୍ଥ୍ୟ ଥିଲେ ଅସମର୍ଥ ପରି ହୁଏ ।
ଏହି ରୂପେ ଚଳଇ ଅଛି ଯେଉଁ ନର ।
ଉତ୍ତମ ମାର୍ଗ ବୋଲି ଜାଣିବ ତାହାର । ୪୨ ।
ଯେବେ ନିଜ ଇନ୍ଦ୍ରିୟ କରିବ ଆୟତ୍ତ ।
ତେବେ ପୃଥ୍ୱୀ ତୁମ୍ଭ ଭୋଗ ହେବ ସତ । ୪୩ ।
ଧାର୍ମିକ, ଶୂର ଯାର ଥାନ୍ତି ଜ୍ଞାତି ନର ।
ତେଉଁ ସୁଖ ଅବା ନାହିଁ ତ ତାହାର ।
ଅନ୍ୟୋନ୍ୟକୁ ଆଶ୍ରୟ କରି ସେ ଜ୍ଞାତିଏ ।
ବିପଦ୍ ପଡିଲେହେଁ ନ କରନ୍ତି ଭୟେ ।
ବନରେ ବୃକ୍ଷମାନେ ଲଗା ଲଗି ହୋଇ ।
ଥିଲେ ପବନ ତ ଭାଙ୍ଗି ତା ପାରଇ । ୪୪ ।
ବିପତ୍ତିରୁ ତରିବା ଇଚ୍ଛା ଥାଏ ଯାର ।
କଷ୍ଟେ ପ୍ରାଣ ରଖିବା ଉଚିତ ତାହାର । ୪୫ ।

ବିପତ୍ତିରେ ଧର୍ମ ରକ୍ଷନ୍ତି ଯେଉଁ ନର ।
ଧର୍ମବୀର ମାନଙ୍କେ ଅଟନ୍ତି ସେ ସାର । ୪୬ ।
ପୁଣ୍ୟ ଜନ୍ମ ଲୋକର କୀର୍ତ୍ତି ନୋହେ କ୍ଷୟେ ।
ପୁଣ୍ୟ ବଳେ ପର ପ୍ରାଣ ମଧ୍ୟ ହୁଏ । ୪୭ ।
ନିନ୍ଦିତ-କର୍ମ, କ୍ରୂର-କର୍ମକୁ ଛାଡ଼ିବ ।
ଯେ ଜନ ପଣ୍ଡିତଙ୍କ ବଚନ ମାନିବ ।
ଉପକାର କରିବା ଲୋକର ଉପକାର ।
ଯେଁ ଭୁଲଇ ଉତ୍ତମ ପୁରୁଷ ସେ ନର । ୪୮ ।
ପରଲୋକ-ବନ୍ଧୁ ଧର୍ମଟି ଅଟଇ ।
ଧନ, ନାରୀ, ଜନ, ସ୍ଥିରଟି ନୁହଇ । ୪୯ ।
ସାମ, ଦାନ, ଭେଦ, ଦଣ୍ଡ, ଇନ୍ଦ୍ରଜାଲ ।
ଉପେକ୍ଷା, ମାୟା, ସାତ ଉପାୟ ଭୂପାଳ । ୫୦ ।
ଶାସ୍ତ୍ର ତ ଲେଖିଅଛି ଷଟ କର୍ଣ୍ଣ ହେଲେ ।
ମନ୍ତ୍ରର ଦାଣ୍ଡେ ପଡ଼ି ନାଶ ଯାଏ ଭଲେ । ୫୧ ।
ଅଳପ ବ୍ୟବସାୟେ ହେଲେ ମହାକାର୍ଯ୍ୟ ।
ତତକାଳେ ସେ କଥା କରିବ ମହାରାଜ । ୫୨ ।
ଯୁଧିଷ୍ଠିର ରାଜାଙ୍କ ନ ଥିବାରୁ ଶତ୍ରୁ ।
ଏଣୁ ନାମ ବହିଲେ ସେ ଅଜାତଶତ୍ରୁ । ୫୩ ।
ଯେଉଁ ଲୋକ ପରର ଜାଣଇଁ ଅନୁଭାବ ।
ସେ କଦାପି ଆପଣାକୁ ପ୍ରଶଂସା କରିବ । ୫୪ ।
ଯାହାଙ୍କୁ ପର ଲୋକେ କରନ୍ତି ପ୍ରଶଂସା ।
ସେହିଁ ପୂଜା ପାଏ ମାଧବ, ଏ ଭାଷା । ୫୫ ।

ଦୁର୍ବଳ କୁଳେ ଜନ୍ମି ହେବ ଯେ ବଳଥାଇ ।
ତାହାଙ୍କୁ ପ୍ରଶଂସନ୍ତି କରନ୍ତି ସବୁ ନର । ୪୬ ।
ଜ୍ଞାନ, ଶୀଳ, ଦୁଇ ତଥା ଯାର ନାହିଁ ।
ଯୁଦ୍ଧେ ପରାକ୍ରମ କଲେ ସେ ମରଇ । ୪୭ ।
ନାସ୍ତିକ ଲୋକଙ୍କ ପରେ ବସ୍ତୁକୁ ।
ହରିବାକୁ ବଳାଇ ଥାଆନ୍ତି ଅଶାକୁ । ୪୮ ।
ଯେଉଁ ଲୋକ ଅପଣା ଧର୍ମରେ ସନ୍ତୁଷ୍ଟରେ ।
ଥାଏ ଜାଣ ଦନ ସେ ନଥାଇ ଦୁଷ୍କୃରେ । ୪୯ ।
ଯେଉଁ ଲୋକ ପର ଧନକୁ ଗ୍ରହ ଲୋଡ ।
ଅପଣା ଅଦୃଷ୍ଟକୁ ମଣଇ ସୁଜନ ।
ସେ ଲୋକର ଜାଣ ହୁଅଇ ସର୍ବନାଶ ।
ଏଥିରୁ ଅନ ଦେଲେ ପାଏ ସେ ବିପନ୍ତି । ୬୦ ।
ପଡ଼ିଲେ ବିପତ୍ତିକୁ ମନେ ନ ଦେଖିବ ।
ନରଲସ ହୋଇ ଦନକୁ ହରୁଥିବ ।
ଉତ୍ସାହକୁ ମନରେ ଥିବ ଅଶ୍ୱ ଧର ।
କହୁଥିବ ସତ୍ୟରେ ତଥା ମିଷ୍ଟ ବଚ ।
ବନସ୍ପରେ ନଜ ଲକ୍ଷ୍ୟ ଦେଇଥିବ ।
ଯେଉଁ କଥା ପଡ଼ିବ ତହିଁର ଜଗିବ ॥
ଏପର ଯେଉଁ ଲୋକ ଅଛୁ ଏ ଲୋକରେ ।
ନ ବୁଡ଼େ ତାର ଚିତ୍ତ କେବେହେଁ ଶୋକରେ । ୬୧ ।

ପୁଣି ଶାସ୍ତ୍ର ଲେଖିଛୁ ଯେ ମିତ୍ର ଲୋକଙ୍କୁ ।
ଦ୍ରୋହକରେ ତାର ସେ ବଢଇ ନରକକୁ । ୬୨ ।
ଶତ୍ରୁ ବଶ ଲୋକଙ୍କୁ ଯେବେ କଲେ କାର୍ଯ୍ୟ ।
ଅବଶ୍ୟ ତାହାରଷ୍ଟ ହୁଅଇ ଅକାର୍ଯ୍ୟ । ୬୩ ।
ଜନ୍ମ ହେଲକ୍ଷଣି କାହାର ଶତ୍ରୁ ନାହିଁ ।
ଯେ ଯାକୁ ପୀଡ଼ା ଦଏ ତାର ଶତ୍ରୁ ସେହୁ । ୬୪ ।
ଲୋକମାନଙ୍କର ମାର୍ଗକୁ ଯେ ଜାଣଇ ।
ଜାଣ ସେ ସବୁଠାରେ ବ୍ୟଭାର କରଇ । ୬୫ ।
ଯେ ରୂପରେ ଲୋକ ମତ୍ସ୍ୟର ଲୋଭରେ ।
ଗଳରେ ଚଢ଼ି ତାହା କାଟଇ ସଧରେ ।
ସେ ପ୍ରକାରେଁ ମଧୁମାଛିଏ ଲୋଡ଼ନ୍ତି ।
ବୃକ୍ଷଅଗ୍ରେ ବେଢ଼ି ତାକୁ କାମୁଡ଼ନ୍ତି ।
ତେବେ ତାହା କଷ୍ଟ କରି ସେ ନ ଗଣେ ।
ମରଣକୁ ବରଣ କରଇ ଆପଣେ । ୬୬ ।
ଶାସ୍ତ୍ର ଲେଖିଅଛୁ ନହେବ ଯେବେ କୁଳ ।
ଗୋଟିକୁ ଛାଡ଼ିଦେବ ହେବ ସେ କୁଶଳ ।
ଗ୍ରାମ ପାଇଁ ମଧ୍ୟ ଛାଡ଼ିବ କୁଳକୁ ।
ଦେଶପାଇଁ ଛାଡ଼ିବ ସେରୂପେ ଗ୍ରାମକୁ । ୬୭ ।
ଅଙ୍ଗାରପାଇଁ ଲୋକେ ହାଣି ତରୁବର ।
ପୋଡ଼ିଲା ପରେ ସ୍ୱାଦ କେବେହେଁ ନ କର । ୬୮ ।

ଜୁଆ, ତୃଷ୍ଣା କଥାମାନଙ୍କର ମୂଳ ।
ଯହିଁ ସେ ପ୍ରବର୍ତ୍ତିଇ କରିବ ଅଗ ସ୍ଥୋଳ । ୬୯ ।
ଜାଣିମାର ହୋଇ ପରକୁ ଅନୁଗତ ।
ହେଲେ ତାକୁ ନନ୍ଦା କରନ୍ତି ଜଗତ । ୭୦ ।
ଅଗ୍ନିରେ ନ ଲାଗେଁ ଦ୍ରବ୍ୟ ଯେ ନ ଥଣଇ ।
ସବୁଇ ମତରେ ସେ ବଞ୍ଚି ନ ଜାଣଇ । ୭୧ ।
କହିଲେ ହିତ ଲୋକ କର୍ଣ୍ଣକୁ ଶୁଭେ କଟୁ ।
ଅହିତ ଯେ କହେ ସେ ପିନା କରେ ଗୁଟୁ ।
ପ୍ରିୟ କହି ଅହିତ କରିବା ଲୋକେଛନ୍ତି ।
ଅପ୍ରିୟ କହି ହିତ କରିବା କେ ନାହାନ୍ତି । ୭୨ ।
ଲୋକମାନେ କେବଳ ମାନନ୍ତି ଧର୍ମକୁ ।
ଫିଙ୍ଗିଦେଇ କରି ପଛକୁ ଅଧର୍ମକୁ ।
ଧର୍ମ ଯେବେ ଅମ୍ଭେ ପାଳନା କରିଥିବୁଁ ।
ତେବେ ଜାଣ ଏ ଦୁଃଖ ସମୁଦ୍ରୁଁ ତରିବୁଁ । ୭୩ ।
ପଣ୍ଡିତଲେ ସଭାରେ ଜାଣି ଯେ ଭୁନ ହୁଏ ।
ମିଥ୍ୟା କଥା ଦୋଷରୁ ଅଧିକ ସେ ପାଏ । ୭୪ ।
ଇଷ୍ଟ ବିବର୍ଜ୍ଜନ ଅନିଷ୍ଟ ପ୍ରବେଶ ।
ବ୍ୟାଧି ଶ୍ରମ ଏ ହେଲେ ହୁଅଇ ଦେହ କ୍ଳେଶ । ୭୫ ।
ବୁଦ୍ଧିମନ୍ତ ଅଗ ମନୋଦୁଃଖ ଜାଣି ।
ପଛେ ସବୁ କଥାକୁ ଉପାୟ କରେ ବଣି ।

ତାହାଙ୍କ ଲୁହା ପାଣି କୁଣ୍ଡରେ ପଡ଼ିଲେ ।
ଯେଉଁ ରୂପେ ତପତ କରେ ସେ ତାକୁ ଭଲେ ।
ସେହିରୂପେ ମନୋଦୁଃଖ-ଅଗ୍ନି ଘୋଟି ।
ଅଗନର ପୋଡ଼ ଦଅଇ ଶରୀରଟି । ୭୬ ।
ସ୍ନେହରୁ ମନଦୁଃଖ ହେଉଅଛି ଜାତ ।
ସ୍ନେହରୁ ଦୈହଚିନ୍ତା ପ୍ରାଣିଏ ଅସହତ ।
ସ୍ନେହ, ଭୟ, ହରଷ, ଶୋକର ଜନନୀ ।
ଅଜ୍ଞାନକୁ ଦଧ ଥାଏ ସଙ୍ଗେ ଘେନି । ୭୭ ।
ତୃଷ୍ଣା ସବାଙ୍କରୁ ଅଧର୍ମ ବହୁଳ ।
ହୋଇ ତାକୁ କରି ଦଅଇ ନିର୍ମୂଳ ।
ତୃଷ୍ଣା ଯହିଁ ଥାଏ ତହିଁ ଥାଏ ଲୋଭ ।
ଲୋଭରୁ ଅନର୍ଥକି ହୁଅଇ ପ୍ରଭବ । ୭୮ ।
ଅର୍ଥ ପୁଣି ଚୋର, ଅଗ୍ନି, ରାଜାଠାରେ ।
ଭୟକୁ ଜାତ କରୁଥାଏ ନିରନ୍ତରେ । ୭୯ ।
ଯେଉଁ ରୂପେ ମାଛ ମାରଇ ମାଛକୁ ।
ସେ ରୂପେ ନର ଲୋଭେ ମାରନ୍ତି ନରକୁ । ୮୦ ।
ଅରଜନ ପାଳନ ବ୍ୟୟ ଏ ତିନି କଥା ।
ହୋଇ ଅର୍ଥ ସବାଙ୍କୁ ଦେଉଥାଏ ବ୍ୟଥା । ୮୧ ।
ଐଶ୍ବର୍ଯ୍ୟ, ରୂପ, ଦ୍ରବ୍ୟ, ଜୀବନ, ଅନିତ୍ୟ ।
ବୋଲି ସ୍ନେହ ଏଥିରେ ନକରେ ପଣ୍ଡିତ । ୮୨ ।

ଗୃହସ୍ଥଲୋକ ଅନୁଗତଙ୍କୁ ଅଗ ଦେବ ।
ତଦନ୍ତେ ଯାଇ ଭୋଜନ କରିବ ॥
ନଥିଲା ଗୃହସ୍ଥ ଯେବେ ଦେଖିବ ଅତିଥି ।
ପାଣିପିଢ଼ା ଦେଇ ପୂଜିବ ଯତ୍ନରି ॥
ରୋଗୀ ଯେବେ ଅତିଥି ହୋଇଣ ଆସିବ ।
ଧୋଇବାକୁ ତାକୁ ଆସନ ଖଣ୍ଡେ ଦେବ ॥
ତୃଷାର୍ତ୍ତ ଅତିଥିର ଦେବ ପାଣି ପଣା ।
ଏଥି କଦାଚିତେ ନୋହିବ ବୃଦ୍ଧିବଣା ॥
କ୍ଷୁଧିତ ହୋଇଥିବ ଯେଉଁ ଅତିଥିନ୍ତୁ ।
ତାହାକୁ ଦେବ ଦ୍ରବ୍ୟ ଅନ୍ନରେ ଗ୍ରାସନ୍ତୁ ॥
ଅଗ୍ନିହୋତ୍ରୀ, ବୃଷଭ, ଅତିଥି, ଜ୍ଞାତି, ବନ୍ଧୁ ।
ପୂଜା ନୋହିଲେ ଏ କରନ୍ତି କ୍ରୋଧସିନ୍ଧୁ ॥
ଭୃତ୍ୟ, ଦାସ, ସୁତମାନେ ଏହିରୂପେ ।
ନପାଇଲେ ପୂଜା ନାଶନ୍ତି ତାକୁ ଆପେ ॥
ଆପଣା ପାଇଁ ନ କରାଇବ ଅନ୍ନପାକ ।
ତୁଷ୍ଟ ନୋହିବନ୍ତ ପଶୁଙ୍କ ଯାଚକ ॥
ପିତୃ ଦେବତାଙ୍କୁ ନଦେଇ ଭୋଜନ ।
ନକରିବ ଯିଏନ୍ତ ଦେବ ସାଧୁଜନ ॥
କୁକୁର, କୁଆ, ଶୃଗାଳକୁ ବଳିଦେଇ ।
ତେବେ ଭୁଞ୍ଜି ବସିବ ବଳୀ ଦେବାପାଇଁ ॥

ସନ୍ଧ୍ୟାବେଳେ ପ୍ରାତଃକାଳରେ ଯାହା ଦେଇ ।
ବୈଶ୍ୱଦେବ ନାମଟି ତାହାର ଅଟଇ ॥
ସମସ୍ତଙ୍କୁ ଦେଇ ବୈଶ୍ୱଦେବ କରି ।
ଯେ ଭୁଞ୍ଜଇ ଅମୃତ ଭୋଜନ ତାହାରି । ୮୩ ।
ସାଧୁଲୋକ ଯହିଁକି କରୁଥାନ୍ତି ଦୁଃଖ ।
ତାହାଙ୍କୁ ଅସାଧୁଏ ମଣୁଥାନ୍ତି ସୁଖ । ୮୪ ।
ଇନ୍ଦ୍ରିୟଙ୍କ ନିଗ୍ରହ କରି ଜୀବନ୍ତରେ ।
ବସା ପିଚା ଅହାରେ ଶୋଚନା ନ କରେ ॥
କର୍ମଫଳ ଗଢ଼ ଅଭ୍ୟାସ କରେ ବେଦ ।
ତହିଁରେ ଖୁଷି ଦେଉଥାଏ ସେ ପ୍ରମୋଦ ।
ତତ୍ତ୍ୱଙ୍କୁ ସବୁଠାରୁ ଦେଇ ଜବର୍ତ୍ତାଇ ।
ରଖିଥାଏ ତାହାର ଅସ୍ତିତ୍ୱ କରାଇ ।
ଯାହାଠାରେ ପ୍ରିୟ ଅପ୍ରିୟ ନ ଘେନେ ।
ମଲେ ଦେବତାଙ୍କ ହୁଅନ୍ତି ସେମାନେ । ୮୫ ।
ମୋକ୍ଷ ଅର୍ଥ କାମର ଅଟଇ ଧର୍ମ ମୂଳ ।
ଧର୍ମ ଥିଲେ ଲୋକ ହୁଅଇ ମହୀପାଳ ॥
ଶତ୍ରୁ ଦେଲ କ୍ଲେଶଙ୍କୁ କାଳ ବଶେ ସହୁ ।
ଯେ ରହନ୍ତି ଜାଣ କାର୍ଯ୍ୟପାଏ ସେହୁ । ୮୬ ।
ସମସ୍ତଙ୍କୁ ଅଗ ଖୁଆଇବ ଅନ୍ନ ।
ଯେ ରଜା ହେବ ପଛେ କରିବ ଭୋଜନ ।

ତେବେଁସ୍ତ ଲୋକଙ୍କର ମନ ସେ ପ୍ରଭୁ ପଛେ ।
ରହୁଥାଏ ଅହର୍ନିଶିରେ ଅତି ସ୍ୱଚ୍ଛେ । ୮୭ ।
ଜୁଆ, ସ୍ତ୍ରୀସଙ୍ଗ, ମୃଗୟା, ମଦ୍ୟପାନ ।
ଛାଡ଼ନ୍ତି ଯେ ହୁଅନ୍ତି ସାଧୁ ସେ ସଜ୍ଜନ । ୮୮ ।
ଜୁଆରେ ଯେଉଁ ଲୋକ ହୁଅଇ ଅସକତ ।
ହଳକେ ହାରେ ସତ୍ପୁରୁଷାର୍ଜିତ ବିତ୍ତ ।
ଯେଉଁ ସନ୍ଧି ଯୁକ୍ତି କଥ୍ୟ କହେ କ୍ଷମା ।
ଶତ୍ରୁଙ୍କ ସକାଶରୁ ଲଭେ ସେ ଦୁଃଖ ସୀମା । ୮୯ ।
ହିଂସା କଲା ଲୋକକୁ ଯେ ହିଂସା କରିବ ।
କରିବା କୀର୍ତ୍ତି ତାର ବିନାଶ ହୋଇବ । ୯୦ ।
କ୍ଷମା ଯେଉଁ ଲୋକର ହୃଦୟେ ହୋଏ ଜାତ ।
ତାହାକୁଟ ଦୟା କରନ୍ତି ଲକ୍ଷ୍ମୀକାନ୍ତ । ୯୧ ।
ତାଠ ଭୁଣ୍ଡାଇଟମାନଙ୍କୁ ନର୍ତ୍ତକ ।
ନଚାଇଲା ପରି ଏ ସମସ୍ତ ଲୋକ ।
ଈଶ୍ୱରର ମାୟା ରଜ୍ଜୁରେ ବନ୍ଧା ହୋଇ ।
ଚଳୁଛନ୍ତି ତାହାର ଅଯୁକ୍ତି ନାହିଁ ।
ବୃଷଭ ନାକେ ରଜ୍ଜୁ ଦେଇ ଯେଉଁ ଅଡ଼େ ।
ଟାଣୁଥିଲେ ଯାଉଥାଏ ସେହୁ ଅଡ଼େ ।
ସେହୁ ରୂପେ ଈଶ୍ୱର ପ୍ରଭାବରେ ଲୋକ ।
କରୁଥାଏ ବିଷ ବିବେକା ବିବେକ ।

ପ୍ରାଣିଏ ଜୀବନରେ ପ୍ରେରିତ ହୁଅନ୍ତେ ।
ସ୍ୱର୍ଗ ନରକକୁ ଭୁଞ୍ଜନ୍ତି ସମସ୍ତେ ।
ଅନ୍ତର୍ଯ୍ୟାମୀ ରୂପେ ସବୁରି ଦେହେ ଥାନ୍ତି ।
ଶୁଭ ଅଶୁଭକୁ ବିଧାନ କରନ୍ତି । ୧୨ ।
ସାକ୍ଷାତେ ଦେଖୁଥାଇଁ ପାପରେ ଲୋକମାନେ ।
ଅସ୍ତ ଦଶା ପ୍ରେତଙ୍କୁ ଭଜନ୍ତି ବହନେ । ୧୩ ।
ଯେ ଫଳ ଇଚ୍ଛା କରି ଧରମ ଅଚରେ ।
ତାହାଙ୍କୁଁ ନିନ୍ଦା କରନ୍ତି ଫସାରେ । ୧୪ ।
ସ୍ୱର୍ଗ ସମ୍ପଦକୁ ଧର୍ମଟି ବୋଲିତ ।
କହୁଛି ବୁଝିବାକୁ ତୁମ୍ଭେଟି ମୁଁ ସତ । ୧୫ ।
ଧର୍ମ ଅଧରମ କରଇ ଯେଉଁ ନର ।
ଅବଶ୍ୟ ଶୁଦ୍ଧ ଶୁଭ ହୁଅଇ ତାହାର । ୧୬ ।
ବତ ମଧ୍ୟ ଜଳରେ ଥାଇ ତାର କର୍ମ ।
ଅଚଳ ଅହାଇ ସେ କରୁଛି ନିଜଧର୍ମ । ୧୭ ।
କର୍ମ କରିବାରେ ସାମର୍ଥ୍ୟ ଥାଇ କରି ।
ଯେଉଁ ଲୋକ ରହଇ କର୍ମକୁ ନ କରି ।
ଅଲପ କାଳରେଟି ତାହାର ନାଶଟି ।
ପ୍ରକାଶିତ ହୁଅଇ ଜଗତ ମଧ୍ୟଟି । ୧୮ ।
କୃଷକର ବୃଷିବା କଥାଟି ଅପୂର୍ବ ।
ସେ ହେବା ବୋହିବାରେ ପର୍ଜନ୍ୟ ସାମନ୍ତ ।

ଫଳ ନ ଫଳିଲେ ଅଦୃଷ୍ଟ ଥିବାରୁ ।
ଉଦ୍ଧବ ନୌକାଜନ୍ମା ସମୁଦ୍ରରୁ ତରୁ । ୯୯ ।
ଧର୍ମ·ଅର୍ଥ ଛଡ଼ି ଯେ ଅର୍ଥ ଇଚ୍ଛାକରେ ।
ହିଂସ୍ରିତ ହୁଅଇ ସେ ସବୁ ପ୍ରାଣିଙ୍କରେ । ୧୦୦
କାମାର୍ଥୀ ହୋଇ ଧର୍ମ-ଅର୍ଥ ଯେ ଲଂଘଇ ।
ନ ରହଇ ତା ପାଶେ ଗୋଁଠି ଏ ଖାଦା ହୋଇ । ୧୦୧।
ଜଳ ଶୁଷ୍କେ ମୀନ ଯେ ରୂପେ ଯାଏ ନାଶ ।
କାମ ହେଲେ ସେ ରୂପେ ପାଏ ସେ ଦେହି କ୍ଳେଶ ।୧୦୨
କାମ ଲୋଭ ସକାଶୁ ଛାଡ଼ଇ ଯେ ଧର୍ମ ।
ତାହାକୁ ନାଶ କରଇ ପଳାଏ ଅଧର୍ମୀ । ୧୦୩ ।
ଯାହାରନ୍ତ ଯୁବା ଅବସ୍ଥା ହୋଇବ ।
କାମ, ଅର୍ଥ, ଧର୍ମକୁ କ୍ରମରେ କରିବ । ୧୦୪ ।
ଦ୍ରବ୍ୟ ଥିଲେ ସବୁ ଧରମ ହୁଅଇ ।
ଦ୍ରବ୍ୟ ହୀନ ଲୋକ କରିବ ତାହା କେହ୍ନେ । ୧୦୫ ।
ଏ ଜୀବନ ପାଣି ଫୋଟକା ସଦୃଶେ ।
ନ ଜାଣନ୍ତି ଲୋକ ଏ କେତେବେଳେ ଯାଏ । ୧୦୬।
ଯେଉଁ ଲୋକ ବସିଥାଏ ଘରେ ବ୍ୟର୍ଥ ।
ଅକସ୍ମାତେ ଯେବେ ମିଳଇ ପଦାର୍ଥ । ୧୦୭ ।
ସେ ଲୋକକୁ ହଠବାଦୀ ବୋଲି କହୁ ।
ଶାସ୍ତ୍ର ଲେଖିଅଛନ୍ତି ସନ୍ଦେହ ଏଥି ନାହିଁ ।

ଦଇବ ଉପରେ ଯେ ଦେଉଥାଏ ଭାର ।
ଦଇବ ଦେବା ଧନ ଅଟଇ ତାର । ୧୦୮ ।
ଉଦ୍ୟୋଗ କରି ଯେ ଅରଜେ ବିତ୍ତ ।
ପଉରୁଷ ବୋଲନ୍ତି ତାର ନାମ ଖ୍ୟାତ । ୧୦୯ ।
ଛଳ କଳ ସୂତ୍ରେ ଯାହାର ଦ୍ରବ୍ୟ ହୁଏ ।
ସ୍ୱଭାବିକ ତାକୁ ବୋଲନ୍ତି ସବୁଏ । ୧୧୦ ।
ହଠରେ, ଦଇବରେ, ସ୍ୱଭାବେ, କର୍ମେ ଲୋକ ।
ଅର୍ଜିବା ଧନ ଛବ କର୍ମର ଫଳ ଯାକ । ୧୧୧ ।
ପ୍ରତି ଗ୍ରହରୁ ଯେ ନିବର୍ତ୍ତାଇ ମନ ।
କରିଥାଏ ନିର୍ମଳ ଆପଣା ଅପଘନ ।
ଦୂରରୁ ଦୂର କରି ହୃଦସ୍ଥ ଅହଙ୍କାର ।
ପାତକ କଥା ମନେ ନ କରେ ବିଚାର ।
ଧନ ଅର୍ଜନ କଥାକୁ ନ ଜାଣଇଁ ।
ଜିତେନ୍ଦ୍ରିୟ ହୋଇ ଜନଙ୍କୁ ଜାଅଇ ।
ଅକ୍ରୋଧନ ହୋଇ ହୋଇବ ସତ୍ୟଶୀଳ ।
ଏପରି ଲୋକଙ୍କୁ ଅଛି ତୀର୍ଥ ଫଳ । ୧୧୨ ।
ଯେଉଁ ଲୋକ ହୃଦସ୍ଥ ଧର୍ମରେ ନିର୍ମଳ ।
ସେହୁଟି ତୀର୍ଥ ଯାଇ ଲଭଇ ତୀର୍ଥ ଫଳ । ୧୧୩ ।
ଅତି ବୃଷ୍ଟି, ଅନାବୃଷ୍ଟି ହେଉଥାଏ ।
ଅଧର୍ମୀମାନଙ୍କର ନାଶର ଉପାୟେ ।

ବ୍ୟାଧି କ୍ଷୁଧା ସବାରିଁ ପାଉଥାନ୍ତି ପୀଡ଼ା ।
ତେବେହେଲେ ଅଧର୍ମ କରନ୍ତି ଗଣ୍ଡମୂଢ଼ା ।
ଅନ୍ନରୁ ଧର୍ମ ହୋଇଛି ଉପଗତ ।
ଧର୍ମରୁ ବେଦ ହୋଇଛି ପ୍ରତିଷ୍ଠିତ । ୧୧୪ ।
ନୀଚ ଲୋକ ଯେବେ ଅନୀତି ଲୋଭ କରେ ।
ଅଳପ କାଳରେ ପଡ଼ଇ ଶୋକମେ । ୧୧୫ ।
ଉତ୍ତମ ହୋଇ ଯେବେ ପ୍ରଭୂତେ ଦୋଷ କରେ ।
ତେବେ ସେ କୃପାଣକୁ ଅଣଇଁ ଗଳାରେ । ୧୧୬ ।
ସତ୍ୟ, ଦାନ, କ୍ଷମା, ଅନୃଶଂସ୍ୟ, ଗୁଣ ।
ଯାର ଅଛି ସେହି ବୋଲାଏ ବ୍ରାହ୍ମଣ । ୧୧୭ ।
ସର୍ପ ବୋଇଲେ, ହେ ମହଗଲେ ନଲ ।
ଦେବ, ନର, ପଶୁ, ଶରୀର ହୁଏ ତାର ।
ଚତୁଷ୍ପାଦ ଯେବେ ସୁକୃତ ହୁଅଇ ।
ତେବେ ଦେବ ରୂପେ ସ୍ୱର୍ଗରେ ବସଇ ।
ଦୁଇ ପାଦ ସୁକୃତ ହୁଅଇ ଯାହାର ।
ସତ୍ୟଯୁଗ ସୁଖ ଭୁଞ୍ଜଇ ସେହୁ ନର ।
କାମ, କ୍ରୋଧ, ହିଂସା ଯୁକତ ଯାର କାୟେ ।
ପଶୁ ଶରୀରେ ଅପି ସେ ଜାତ ହୁଏ ।
ଥିଲେ ପୂର୍ବେ ସୁକୃତ, ପଶୁ ଜନ୍ମ ତେଜ ।
ପୁଣି ଜାତ ହୁଏ ମନୁଷ୍ୟ ରୂପ ଧରି । ୧୧୮ ।

ଧର୍ମଚିନ୍ତା ଲୋକଙ୍କୁ ଏ ସଂସାରୁ ତାରେ ।
ନାହିଁ ବନ୍ଧୁ କାର୍ଯ୍ୟ ଜାତରେ, କୁଳରେ । ୧୧୯ ।
କର୍ମକୁ ଅନୁରୂପ ଅନ ଦେହ ଧରେ ।
ସେ ପ୍ରାଣ ଧନ ଯାଇ ରହଇ ସ୍ୱଚ୍ଛରେ । ୧୨୦ ।
ଯେଉଁମାନେ ଧନ ନ ଖାନ୍ତି ନ ଦଅନ୍ତି ।
ଇହ-ପର ଦୁହିଁରେ ନାହିଁ ତାଙ୍କ ସ୍ଥିତି । ୧୨୧ ।
ବାକ୍ୟ-ଶୌଚ, କର୍ମ-ଶୌଚ, ଜଳ-ଶୌଚ ।
ଯେ କରନ୍ତି କେବେହେଁ ନ ଦେଖେ ସେ ମର୍ତ୍ତ୍ୟ । ୧୨୨ ।
ମନ ବଚନରେ ଯେ କରନ୍ତି ପାପ ।
ତାହାର ଲୋଡ଼ା ହେବ ନାହିଁକି ତପ । ୧୨୩ ।
ଯାହାର ଜ୍ଞାତିଠାରେ ଦୟା ନାହିଁ ବନ୍ଧୁ ।
ତାର ଜପତପରେ କି କାର୍ଯ୍ୟ ନୃପବନ୍ଧି । ୧୨୪ ।
ଜ୍ଞାନ ଯାର ନାହିଁ, ଧର୍ମ ତାର ନାହିଁ ।
ଜ୍ଞାନ ଥିବା ଲୋକଙ୍କୁ ବୋଲାଏ ପୁଣ୍ୟ ଦେଖି । ୧୨୫ ।
ଅଳ୍ପ ଜ୍ଞାନ ଯାର ଅଛି ନୃପବର ।
ଅଧିକ ପାଠ ଲୋଡ଼ା ନାହିଁକି ତାହାର । ୧୨୬ ।
ପିତା ମାତା ଯାହାରେ ସନ୍ତୁଷ୍ଟ ହୁଅନ୍ତ ।
ତାର ଇହ ପରରେ କୀର୍ତ୍ତି ହୁଏ ଖ୍ୟାତ ।
ଏ କାରଣେ ପିତା ମାତା ଠାରୁ ମହୀ ।
ମଣ୍ଡଳରେ ଆଉ କେହି ବଡ଼ ନାହିଁ । ୧୨୭ ।

ଦାନ, ବ୍ରତ, ତପ, ଉପବାସ କଲେ ।
ସ୍ତ୍ରୀମାନେ ତରି ନ ପାରନ୍ତି ଭଲେ ।
ଭର୍ତ୍ତା ତାହାଙ୍କର ଅଟଇ ପୋଷକ ।
ତା ସେବାରେ ଏକା ସେ କରଇ ସ୍ୱର୍ଗଲୋକ ॥
ଭକତା ସେବା ବିନା ଅନମତେ ତାଙ୍କୁ ।
ନାହିଁ ଗତି ଜାଣ ସଂସାରୁ ତରିବାକୁ । ୧୨୮ ।
ହିଂସା କଲା ଲୋକଙ୍କୁ ହିଂସା ନ କରିବ ।
ଗୁରୁଙ୍କୁ ସନ୍ତୋଷରେ ପୂଜା କରୁଥିବ ॥
ଇନ୍ଦ୍ରିୟ ନଗ୍ରହରେ କରିଣ ଯତନ ।
କରୁଥିବ ଭଜନା ଦିବସ ପ୍ରତି ଦିନ ॥
ମିଥ୍ୟାକୁ ନିବର୍ତ୍ତିଇ ଆପଣା ମନିଷା ।
ବେଦକୁ ଏହିଁ କରି କହୁଥିବ ଭାଷା ॥
କାମ କ୍ରୋଧ ଦୁହିଁଙ୍କି କରୁଥିବ ଦୂର ।
ନ ଖାଇବ ମିଳିଲେ ବହୁତ ଅହାର ॥
ଯାଗ କରାଇବ ଆପଣେ କରିବ ।
ବ୍ରହ୍ମସ୍ୱ ହୋଇ ଧନକୁ ଦେଇବ ॥
ଏ ରୂପେ ଗୁଣଥିଲେ ବ୍ରାହ୍ମଣ ବୋଲି କହୁ ।
ନୋହିଲେ ଅବ୍ରାହ୍ମଣ ବୋଲାଏ ସେ ମହୀ । ୧୨୯ ।
ପୂର୍ବେ ଲୋକ କରୁଥାଏ ଯେଉଁ କର୍ମ ।
ପୁଣି ଜନ୍ମ ହେଲେକ ଭୁଞ୍ଜଇ ସେ କର୍ମ । ୧୩୦ ।

ଯେଉଁ ମାନେ ସ୍ୱଧର୍ମ କରି ଜୀଇଥାନ୍ତି ।
ସବୁଙ୍କର ଜାଣ ଅଶ୍ରୟ ସେ ହୁଅନ୍ତି । ୧୩୧ ।
ଉଦଯୋଗ କରଇ ଅତି ଯେଉଁ ଲୋକ ।
ତା ଇଚ୍ଛାରେ ସେହିଁ କରଇ କାର୍ଯ୍ୟଯାକ । ୧୩୨ ।
ଶକତି ଅନୁରୂପେ ଦେଉଥାଏ ଦାନ ।
ଧର୍ମରେ ବୁଦ୍ଧି ରଖି ଥାଏ ପ୍ରତି ଦନ ॥
ଦାନ ଦେବା କଳା ଅନ ଗୁଣ ଯେତେ ।
ଥିଲେ ବଖାଣିଛି ନୃପତି ମହାମତେ । ୧୩୩ ।
ମିଥ୍ୟା କଥା ଛାଡ଼ି ଲୋକଙ୍କର ପ୍ରିୟ ।
କରୁଥିବା ଲୋକର ହୁଏଟି ଉଦୟ । ୧୩୪ ।
କାମ କ୍ରୋଧ ଦୋଷରେ ନ ଛାଡ଼ିବ ଧର୍ମ ।
ସେଥିରେଟି ପ୍ରକାଶଇ ବଡ଼ କର୍ମ । ୧୩୫ ।
ଧର୍ମ କଥା ଦେଖିଲେଟି ଯେହୁଟି ହସନ୍ତି
ସେହୁଟି ଅଳପରେ ନାଶକୁ ପାଅନ୍ତି । ୧୩୬ ।
ମୂର୍ଖଙ୍କୁ ଯେଉଁମାନେ ପ୍ରଶଂସି କହୁଥାନ୍ତି ।
ପାଣିରେ ପ୍ରସ୍ତ୍ରା ବଳ ପ୍ରାୟେ ତାଙ୍କ ଗତି । ୧୩୭ ।
କାହାକୁ ହିଁ ମୁଖେ ନକହିବ ନିନ୍ଦା ।
ଏ କାହାରେ ନ କରିବ ଅସ୍ପ ବନ୍ଦା । ୧୩୮ ।
ଅପଣା ସ୍ତୁତି କରି ଅପରେ ଯେବେ କରେ ।
କରନ୍ତି ନିନ୍ଦା ତାକୁ କରି ସବୁ ନରେ । ୧୩୯ ।

ପାପକୁ ମୂଳ ଲୋଭ ଅଟଇ କାରଣ ।
ଏହା ଜାଣି ଛାଡ଼ିବ ଲୋଭ ଆଚରଣ । ୧୪୦ ।
ବୋଇଲା ବ୍ୟାଧ ଯାଗ, ତପ, ସତ୍ୟ, ଦାନ ।
ଶିଷ୍ଟାଚାର ଏହା ବୋଲନ୍ତି ସବୁ ଜନ । ୧୪୧ ।
କାମ, କ୍ରୋଧ, ଦମ୍ଭ, ଲୋଭକୁ ଯେ ଜିଣି ।
ଅଛି ସେ ଲୋକ ଶିଷ୍ଟ ବୋଲାଏ ଦ୍ୱିଜମଣି । ୧୪୨ ।
ଶିଷ୍ଟାଚାରେ ଯେବେ ମନ ଲୋକ ଦିଏ ।
ଇହଲୋକେ ପ୍ରତିଷ୍ଠା ଅର୍ଜି ସୁଖ ପାଏ । ୧୪୩ ।
ନାସ୍ତିକ, କ୍ରୂର, ପାପୀ, ଅମର୍ଯ୍ୟାଦୀଙ୍କର ।
ସଙ୍ଗକୁ ଛାଡ଼ିଦେବ ଯେ ହେବ ଶିଷ୍ଟାଚାର । ୧୪୪ ।
କାମ-କ୍ରୋଧ ଗ୍ରାହ, ଦୁଃଖ ନଦୀ-ଜଳ ।
ଧୈର୍ଯ୍ୟ-ନାବେ ପାର ହୁଅନ୍ତି ସକଳ । ୧୪୫ ।
ଜନ୍ମରେ ଯେଉଁ ଲୋକ ଧର୍ମ କରୁଥାଏ ।
ତହୁଁ ଜ୍ଞାନଚକ୍ଷୁ ଉପୁଜେ ତାର କାୟେ । ୧୪୬ ।
ସତ୍ୟ କହିବାର ଲୋକଠାରେ ହିଂସା ।
କଦାଚିତେ କରୁ ନ ପାରଇ କଷା । ୧୪୭ ।
ଧର୍ମର ଥିବା ଲୋକ ବୋଲାଏଟି ସାଧୁ ।
ଅଧର୍ମ କରୁଥିଲେ ବୋଲାଏ ଅସାଧୁ । ୧୪୮ ।
ଅକ୍ରୋଧନ ଅହିଂସା ଜନହିତକାରୀ ନର ।
ତାରେ ଶିଷ୍ଟାଚାର କରନ୍ତି ଘର । ୧୪୯ ।

କ୍ଷମା, ସତ୍ୟ, ଶୌଚ, ବୁଦ୍ଧି, ଶୁଭକଥା ।
ଉତ୍ତମ ବୋଲି କହୁଅଛି ଧର୍ମ ପୋଥା । ୧୫୦ ।
ନ୍ୟାୟବନ୍ତ ହୋଇ ହରୁଥିବ ଧନ ।
ମାଗିଲେ ଅଛି ଦେଉଥିବ ଦୁଃଖୀଜନ । ୧୫୧ ।
କୁଟୁମ୍ବକୁ ପୀଡ଼ା ଦେଇ ପରହିତ ।
ଯେ କରୁଛି, ପ୍ରାନ୍ତେ ହୋଏ ସେ ମୁକତ । ୧୫୨ ।
କ୍ରୋଧ ନ କରିବ ଦେବ ସତ୍ୟ କହି ।
ଏଥିରୁଁ ସାଧୁ ହୋଇ ଅନ୍ୟ କଥା ନାହିଁ । ୧୫୩ ।
ଯେଉଁମାନେ ମୋ (ବ୍ୟାଧ) ଠାରୁ ନିଅନ୍ତି ମାଂସ କିଣି ।
ସେମାନେଂ ମୋ ପାପରେ ହୁଅନ୍ତି ଭାଗୀ ପୁଣି । ୧୫୪ ।
କପଟୀ ଲୋକଙ୍କୁ ସୁକୃତ ଉଦାହରେ ।
ତାରି ନ ପାରଇ ହେ ଜାଣ ମହାମତେ । ୧୫୫
ପାପୀ ଲୋକ ବହୁତ ପୁଣ୍ୟ ଯେବେ କରେ ।
ତେବେହିଁ ଲେଖା ହୁଏ ଯାଇ କଷ୍ଟାପରେ । ୧୫୬ ।
ଲୋକପୀଡ଼ା ନ କରି ଅର୍ଜିବ ଧନ ।
ଏହା କଲେ ବୋଲାଏ ସେ ଉତ୍ତମ ଜନ । ୧୫୭ ।
ଦେହ ରଥ, ମନ ସାରଥି, ଇନ୍ଦ୍ରିୟ ।
ଅଶ୍ୱକୁ ଅପ୍ରମତ୍ତରେ ରଖିଲେ ତପପ୍ରିୟ ।
ଇହଲୋକ ପ୍ରତିକ ପର ଲୋକ ଶବେ ।
ଶୁଣ ସୁଖ ପାଇ ଲଭଇ ସେ ସବେ । ୧୫୮ ।

ଅଗ୍ନି, ଗୁରୁ, ଅମ୍ବା ଜନନୀ, ଜନକ ।
ଲୋକଙ୍କର ଏ ପାଞ୍ଚ ଗୁରୁରେ ଅଧିକ । ୫୯ ।
ବ୍ରାହ୍ମଣ ହୋଇ ଯେବେ ଅକର୍ମକୁ କରେ ।
ଶୂଦ୍ର ବୋଲି ତାହାକୁ ବୋଲନ୍ତି ସର୍ବ ନରେ ।୬୦।
ଶୂଦ୍ର ହୋଇ ଯେବେ ଉତ୍ତମ ଆଚାର ।
କରଇ ତାକୁ ସର୍ବ କହଇ ଦ୍ୱିଜବର । ୬୧ ।
ଘରେ ଘରେ ସିନା ହୋଇବ ପିଣ୍ଡା ପିଣ୍ଡି ।
ଦାଣ୍ଡକୁ ବାହାରିଲେ ସେ ଅମ୍ଭେ (କୁରୁ ପାଣ୍ଡବ) ଏକାଠି ।
ସ୍ୱର୍ଗରୁ ଚ୍ୟୁତ ହୋଇ ପଡ଼ଇ ଯେଉଁ ନର ।
ମର୍ତ୍ତ୍ୟରେ ଭୋଗ କରେ ହୋଇ ସେ ନରବର ।
ସୁକୃତ କଲେ ପୁଣି ସ୍ୱର୍ଗ ଭୋଗ କରେ ।
ଦୁଷ୍କୃତ କଲେ ଯାଇ ପଡ଼ଇ ନରକରେ ॥
ଭୂମି କର୍ମ ସ୍ଥାନ, ସ୍ୱର୍ଗ ଭୋଗ ସ୍ଥାନ ।
ଚଉଦ ଭୁବନରେ ବିଖ୍ୟାତ ଏ ଜାଣ ।୬୨।
ଚକ୍ରଧାର ପରି ବୁଲୁଛି ସୁଖ ଦୁଃଖ ।
ଏଥି ପାଇଁ ତୁମ୍ଭେ କ୍ରନ୍ଦଛ ବିମୁଖ । ୬୩ ।
ଚିର କାଳ ଧର୍ମନିଷ୍ଠ ଯେଉଁ ଜନ ।
କ୍ରନ୍ଦନ୍ତି ସେମାନଙ୍କ ବେଢେ ଅବସନ୍ନ । ୬୪ ।
ଧର୍ମ ଥିବା ପ୍ରାଣୀଙ୍କି ଦଇବ ହୋଇ ସାହା ।
ବଢ଼ାଉ ଥାଏ ସବୁ ବେଳରେ ଉତ୍ସାହ । ୬୫ ।

ବ୍ରହ୍ମା ରୂପେ ସୃଷ୍ଟି, ସଂସାର ସରଜନା ।
ହରି ବିଷ୍ଣୁ ରୂପେ କରନ୍ତି ପାଳନା ।
ରୁଦ୍ର ରୂପେ ପୁଣି ହଅନ୍ତି ସଂହାର ।
ଏ ସଂସାରେ ଯେତେ ଥାଅନ୍ତି ଦେହଧାରୀ । ୧୬୬ ।
ଦଇବ ଯାହା କରିଥାଏ ସେ ହୁଅଇ ।
ତା ଅନ ଫେରିବାକୁ କାହାର ଶକ୍ତି ନାହିଁ । ୧୬୭ ।
ସତ୍ୟ, ଅରଜବ, ଅହିଂସା, ସମ, ଦମ ।
ଅନସୂୟା ଶୌଚ, ଇନ୍ଦ୍ରିୟ ସଂଯମ ॥
ଏମାନ ଥିବା ଲୋକ ଲଭଇ ସ୍ୱର୍ଗ ଗତି ।
ଜାଣ ଯୁଧିଷ୍ଠିର ରାଜନ ମହୀପତି । ୧୬୮ ।
ଶାସ୍ତ୍ରରେ କହୁଛନ୍ତି ସାତ ପାଦ ଯାଏ ।
ଯେ ଯାହାର ସଙ୍ଗତେ ଗୋଡ଼ାଇଛି ଯାଏ ।
ସେ ତାହାର ବୋଲାଉଛି ଧର୍ମ ମିତ୍ର ।
ଏଣୁ କିଛି କହିବ ଶୁଣ ଦେଇ ଚିତ୍ତ । ୧୬୯ ।
ଅଜ୍ଞାନବନ୍ତ ଲୋକେ ବନ ମଧ୍ୟେ ରହି ।
ନ ପାରନ୍ତି କରି ଧର୍ମ, ସତ୍ୟ ଦୁଇ ।
ଜ୍ଞାନବନ୍ତ ଲୋକେ ରହିଲେ ବନରେ ।
ଧର୍ମ କରୁଥାନ୍ତି ବସି ସ୍ୱମନରେ । ୧୭୦ ।
ସାଧୁଙ୍କର ପାଶେ ଶରଣ ଅଭକ୍ଷ ।
ଲୋକ ପଶିଲେ ସେ ହୁଅନ୍ତି ତା ରକ୍ଷ । ୧୭୧ ।

ଗାର୍ତ୍ତି ଭକ୍ଷ ପ୍ରାଣ ରଖଇ ଯେଉଁ ନର ।
ତାହାଙ୍କ ତାଣ ଜୀବନ୍ତୁ ସାର । ୧୬୨ ।
ଯୁଧିଷ୍ଠିର ବୋଇଲେ ପ୍ରବାସୀ, ସାର୍ଥ ମିତ୍ର ।
ଗୃହବାସୀ ଲୋକର ଭାରିଜା ତେମନ୍ତ ॥
ମରିବା ଲୋକଙ୍କର ଦାନ ଅଟଇ ମିତ୍ର ।
ସେହି ରୂପେ ରୋଗୀର ବଇଦ ମିତ୍ର । ୧୬୩ ।
ଯୁଧିଷ୍ଠିର ବୋଇଲେ ଦୟା ଠାରୁ ବଳ ।
ପରମ ଧର୍ମ ନାହିଁ ଯକ୍ଷ ମହାବଳ ॥
ଯୁଧିଷ୍ଠିର ବୋଇଲେ ଶତ୍ରୁ ସେ ଅଭିମାନ ।
ସବୁଙ୍କର ପ୍ରିୟ ସେ ଅଟଇ ଯକ୍ଷ ଗୁଣ । ୧୬୪ ।
କ୍ରୋଧକୁ ତ୍ୟାଗ କଲେ କଦାପିତେ ଶୋକ ।
ଛୁଇଁ ନ ପାରଇ କାହାରି ଦେହ ଯାକ ।୧୬୫ ।
କାମକୁ ତ୍ୟାଗ କଲେ ଅର୍ଥବାନ ହୁଏ ।
ଲୋଭକୁ ତ୍ୟାଗ କଲେ ଜନ ସୁଖ ପାଏ । ୧୬୬ ।
ଯୁଧିଷ୍ଠିର ବୋଇଲେ ଯକ୍ଷରାଜ ଶୁଣ ।
କୁଳ ବେଦ ପାଠ ବା ବେଦାର୍ଥ ଗ୍ରହଣ ॥
କେହି ବ୍ରାହ୍ମଣତ୍ୱର କାରଣ ନୁହଇ ।
ଏକାହିଁ ଚରିତ୍ର କାରଣ ଅଟଇ । ୧୬୭ ।
ଚରିତ୍ର ବ୍ରାହ୍ମଣର ଅମୂଲ୍ୟ ମହାବିତ୍ତ ।
ଚରିତ୍ର ହତ ହେଲେ ହୁଅଇ ତାର ହତ । ୧୬୮ ।

ମୂର୍ଖ ଅଟଇ ସେ ଯେ ତତ୍ତ୍ୱ-ହୀନ ।
ପଣ୍ଡିତ ବୋଲାଏ ସେ ଯେହୁ କ୍ରିୟାବାନ । ୧୭୯ ।
ଚତୁର୍ବେଦୀ ହୋଇ ତତ୍ତ୍ୱଜ୍ଞାନ ହେଲେ ।
ଶୂଦ୍ରରୁ ଅନ୍ୟ ବୋଲି ଗଣ୍ୟ ସେ ନୁହେ ଭଲେ ।୧୮୦।
ଯୁଧିଷ୍ଠିର ବୋଇଲେ ଯେ ଋଣୀ, ପ୍ରବାସୀ ।
ନୁହଇ, ଦିବସର ପଞ୍ଚମ ଭାଗେ ବସି ।
ଶାକାନ୍ନ ପାକ କରି ଭୋଜନ କରଇ ।
ସେହୁ ଏକା ସୁଖୀ ହେ ଯକ୍ଷକୁଳସାଇଁ । ୧୮୧ ।
ସଂସାରେ ଦେଖ, ଦେଖୁ ଲୋକଙ୍କ ମରଣ ।
ତଥାପି ଅମରତ୍ୱ ଲୋଡନ୍ତି ବାଳ ଜଣ ।
ଏଥିରୁ ଆଶ୍ଚର୍ଯ୍ୟଟି ଅନ୍ୟ କି ଅଧିକ ।
ଅଛି କହିବ ହେ ଯକ୍ଷଙ୍କ ତିଳକ । ୧୮୨ ।
ତର୍କର ତ ନାସ୍ତ୍ରି ହୋଇ କଥା କାହିଁ ।
ଶ୍ରୁତି ତ ଭିନ୍ନ ଭିନ୍ନ ମତ ପ୍ରକାଶଇ ।
ଏମନ୍ତ ଋଷି ନାହିଁ ଅଭ୍ରାନ୍ତ ଯା ମତ ।
ଏଥିରୁ ଜାଣ ଧର୍ମତତ୍ତ୍ୱ ଗୁହାସ୍ଥିତ ।
ଏ ଯେନ ଗାମୀ ମହାଜନଙ୍କର ପଥ ।
ପ୍ରଶସ୍ତ ଅଟଇଟି ଯକ୍ଷକୁଳ ନାଥ । ୧୮୩ ।
ଉତ୍ତମ ଲୋକେ ଯୁଦ୍ଧ ଇଚ୍ଛା ନ କରନ୍ତି ।
ଦଇବରେ ପଡ଼ିଲେ ତା କେବେ ନ ଛାଡ଼ନ୍ତି । ୧୮୪ ।

ପୁଣ୍ୟ ତାହେ ଅଧିକ ଦାନ ବ୍ରତ କରୁ ।
ସେ ବଳେ ଏବେ ସେ ଅଧର୍ମ ଦୂର କରୁ । ୧୮୫ ।
ସମ୍ପଦରେ ଅଧର୍ମ କରି ପ୍ରାୟଶ୍ଚିତ୍ତ ।
ଯେ କରୁଛି ତାହାର ନ ହୁଏ ଶୁଦ୍ଧ ଚିତ୍ତ । ୧୮୬ ।
ବିପତ୍ତି ଅଧର୍ମକୁ ନାଶିବାକୁ ଜନ ।
ସଂପଦରେ କରିବ ଦରିଦ୍ରକୁ ମୋଚନ । ୧୮୭ ।
ସୁକର୍ମେ ଥାଇ କରି ବିକର୍ମକୁ କଲେ ।
ନିନ୍ଦାକୁ ସେ ଯୋଗ୍ୟ ହୁଅଇନ୍ତି ଜଳେଁ । ୧୮୮ ।
ଯେଉଁ ନରା ପର ଭୂମିରେ ଲୋଭ କରେ ।
ଯୁଦ୍ଧ ଘୋଟାଇଛି ଥାଏ ତା ସଙ୍ଗରେ । ୧୮୯ ।
ବାଳକ, ବୃଦ୍ଧ, ଯୁବା, ସାଧୁ ବା ଅସାଧୁ ।
କେହି ଜଣ ନାହାନ୍ତି ବିଧାତା ମାୟା ସିନ୍ଧୁ ।୧୯୦।
ମନ ଛନ୍ଦ ଭଲ କଥା ଯେ କହଇ ।
ପଣ୍ଡିତ ବୋଲି ତାକୁ ସ୍ୱଜନନ୍ତି କହି । ୧୯୧ ।
କ୍ରୋଧ, ଦର୍ପ, ଗର୍ବ ଲଜ୍ଜାରୁ ଯେଉଁମାନେ ।
ନିବର୍ତ୍ତି ଥାନ୍ତି ତାକୁ ପ୍ରଶଂସନ୍ତି ଜନେ । ୧୯୨ ।
ପୁଣ୍ୟ କଥା କଷ୍ଟ ପାଇ କଲ, ଭ୍ରଷ୍ଟ ।
ନ କରେ ଯେ ତାକୁଟି ବୋଲନ୍ତି ନରଶ୍ରେଷ୍ଠ ।
ଯାହାର ବୁଦ୍ଧି ଧର୍ମ ଅର୍ଥରେ ଥାଏ ରହି ।
ତାହାର ନିନ୍ଦାଗଣ କେବେହି ନ ହୁଇ । ୧୯୩ ।

ଯେ ଯାହା ଅମୃତ ସେ ଯେବେ କହେ ଶେଷ ।
ଭାଗ୍ୟବନ୍ତରେ ସେ ହୁଅଇ ପ୍ରକାଶ । ୧୯୪ ।
ବଳଥିବ ଲୋକ ଦୁଲବେ ଗୋଳ କଲେ ।
ନିଦ୍ରା ନ ମାଡ଼ଇ ରାଜନ ଜାଣ ଭଲେ । ୧୯୫ ।
କୁଟୁମ୍ବ ପୋଷିବାକୁ ଜଣେ ପାପ କରୁ ।
ଅନେକ ଥାଏ ଧନ କିଛି ନ କରୁଥ ।
ଖାଇବା ଲୋକଙ୍କ ନୁହଇ କିଛି ପାପ ।
ଅନେକ ଥିବା ଲୋକ ସେ ପାପେ ହୁଏ ଲୋପ । ୧୯୬ ।
କାର୍ଯ୍ୟ ନୋହୁଁ କଥା ହୋଇଲେ ପ୍ରକାଶ ।
ରାଜ୍ୟ ତୁଟିଲେ ରାଜା ଅବଶ୍ୟ ଯାଏ ନାଶ । ୧୯୭ ।
ଏକା ହୋଇ ସ୍ୱାଦୁ ପଦାର୍ଥ ନ ଖାଇବ ।
ଖାଇବ ଯେବେ ମହା ପାତକ ଅର୍ଜିବ । ୧୯୮ ।
ନ ହୁଅନ୍ତି ଜଣକୁ ସମସ୍ତ ଗୋଚର ।
ଏକା ହୋଇ ଭାଳିଲେ ହୁଅଇ ମଉବାର । ୧୯୯ ।
ଏକା ହୋଇ ବାଟ ଗଲେ ଯେ ନିଃଶଙ୍କେ ।
ତା ଭଲ ମନ୍ଦ ବାର୍ତ୍ତା ନ ପାଆନ୍ତି ଲୋକେ ।
ଧର୍ମ, କ୍ଷମା, ବିଦ୍ୟା, ଅହିଂସା ଶ୍ରେଷ୍ଠ ।
ଏକା ହୋଇ ଯାହାରେ ପ୍ରବର୍ତ୍ତି ଅଛନ୍ତି ।
ତାହାଙ୍କୁ ରାଜନ କହାଠେ ଦୁଃଖ ।
କରଇ ନ ପାରଇ ତାହାଙ୍କୁ ସମ୍ମୁଖ । ୨୦୦ ।

ଅଡ଼ାଏ ଉଠଇ ଯେ ମୁଠାଏ ଦଅଇ ।
ସ୍ୱର୍ଗ ତାର ସଙ୍ଗରେ ଥାଇଣ ଗୋଡ଼ାଇ । ୧୦୧ ।
ଉତ୍ତମ ମଧ୍ୟମ ଅଧମ ଏ ତିନୋଟି ।
ନ୍ୟାୟ ଏ ଜଗତରେ ପ୍ରବର୍ତ୍ତି ଅଛନ୍ତି ।
ଏହି ରୂପେ ତିନି ପ୍ରକାରେ ପୁରୁଷ ।
ଏ ଜଗତେ ହୋଇଛନ୍ତି ପରକାଶ ।
ଉତ୍ତମଙ୍କୁ ଉତ୍ତମ ମଧ୍ୟମଙ୍କୁ ମଧ୍ୟମ ।
ଅଧମଙ୍କୁ ଅଧମ କଥାରେ ନୃପୋତ୍ତମ ।
ନିଯୁକତ କଲେ ହୁଅଇ କାର୍ଯ୍ୟ ସିଦ୍ଧି ।
ଏକଥା ମଧ୍ୟ ଜାଣ ନୀତିଶାସ୍ତ୍ର ବିଧି । ୧୦୨ ।
ପରଧନ ପରନାରୀ ଯେ ହରେ ସ୍ୱପ୍ନେ ।
ଜାଣ ତାର ହୃଦୟେ ଭୟ ରହୁଥାଏ । ୧୦୩ ।
ଅଳ୍ପ ବୁଦ୍ଧି, ମଠୁଆ, ଅଳସ ସ୍ତୁତିକାର ।
ଏ ସଭଙ୍କ ଭୁଲେ ନ କରିବ ବିସ୍ତର । ୧୦୪ ।
ଆରୋଗ୍ୟ, ଅନୃଣିତ୍ୱ, ନିର୍ଭୟେ ନିବାସ ।
ସାଧୁ ସଙ୍ଗ, ସ୍ୱାଧୀନ ଜୀବିକା, ଅପ୍ରବାସ ।
ନରମାନଙ୍କର ଅଟଇ ଏ ସୁଖ ।
ଜାଣ ଅହେ ହସ୍ତିନା ନଗରର ଈଶ । ୧୦୫ ।
ଦ୍ୱେଷୀ, ଅସନ୍ତୁଷ୍ଟ, ନିତ୍ୟ ଶଙ୍କିତ, କ୍ରୋଧନ ।
ପରଭାଗ୍ୟ ଉପଜୀବୀ, ଘୃଣାଯୁକ୍ତ ଜନ ।

ଏ ଲୋକଙ୍କ ମହତ ଦୁଃଖକୁ ପାଆନ୍ତି ।
ସଂଶୟ ନ କର ହେ ମୋ କଥାରେ ମତି । ୧୦୫ ।
ନିତ୍ୟ ଆୟ, ଅଧୀନ ପୁତ୍ର, ଅରୋଗିତା ।
ଅର୍ଥକାରୀ ବିଦ୍ୟା, ପ୍ରିୟବାଦିନୀ ଯେ କାନ୍ତା ।
ସେ ପ୍ରିୟକାରଣୀଟି ଏ ଛଅ ପ୍ରାଣୀଙ୍କର ।
ଅଟଇଟି ରାଜନ ମହାସୁଖକର । ୧୦୬ ।
ଅସାବଧାନ ହୋଇ ଥାଆନ୍ତି ଯେତେ ଜନ ।
ଚୋରେଟି ତାଙ୍କଠାରୁ ଯାଆନ୍ତି ନେଇ ଧନ । ୧୦୮ ।
ଜୁଆ, ସ୍ତ୍ରୀ, ମୃଗୟା, ଉଗ୍ର ଦଣ୍ଡ, ପାନ ।
ପରଧନ ହରଣ, ନିଷ୍ଠୁର ବଚନ ।
ଏ ସାତୋଟି କଥା ରାଜା ଯେବେ କରେ ।
ବିନାଶ ଲଭଇଟି ଅଳପ କାଳରେ । ୧୦୯ ।
ମିତ୍ର ସମାଗମ, ପୁତ୍ର ଆଲିଙ୍ଗନ ।
ସମ୍ଭୋଗ, ପ୍ରିୟାଳାପ, ସମୟରେ ପୂଜନ ।
ଧନାଗମ, କୁଳଶ୍ରେଷ୍ଠତା, ଇଷ୍ଟ ଲାଭ ।
ଏମାନ ଯାର ଅଛି ସେ ବଡ ଦୁର୍ଲ୍ଲଭ । ୧୧୦ ।
ପ୍ରମତ୍ତ, ମତ୍ତ, ଶ୍ରାନ୍ତ, ଉନ୍ମତ୍ତ, ବୁଭୁକ୍ଷିତ ।
କ୍ରୁଦ୍ଧ, ତ୍ୱରାନ୍ୱିତ, ଲୁବ୍ଧ, କାମୀ, ଭୀତ ॥
ଏ ଦଶ ଜନ ଧର୍ମ ନ ଜାଣନ୍ତି ବତ୍ସ ।
ଅଧରମ ଯେତେକ ଲୋଡନ୍ତି ବାଛି ବାଛି । ୧୧୧ ।

ଲୋକମାନଙ୍କର ବିଶ୍ୱାସ ଯିବାର ।
ଉପାୟକୁ କରୁଥିବ ନିରନ୍ତର । ୨୧୨ ।
ଦୁର୍ବଳ ହୋଇଥିବା ଶତ୍ରୁଠାରେ ହେଳା ।
କଲେ ବାଢ଼ିଉଠି ସେ ପୁଣି ଥାନ୍ତି ଗଳା । ୨୧୩ ।
ଶତ୍ରୁ ଯେବେ ହୋଇଥିବ ବଳୀୟର ।
ବଶ ହୋଇଥିବ ତାଙ୍କ କଥାରେ ନିରନ୍ତର ।
ବଳୀ ଥିଲେ ଭୁଲେ ବିରୋଧ ସେ କରେ ।
ଅଗ୍ର ହୋଇ ବସଇ ଯମଙ୍କ ନଗରେ । ୨୧୪ ।
କାଳରେ ପରାକ୍ରମ କରଇ ଯେଉଁ ନର ।
ଜୟଲକ୍ଷ୍ମୀ ବଳେ ରୁହଇ ତାହାର । ୨୧୫ ।
ଦୁଃଖ ସହୁ ଉଦଯୋଗ ସେ କରଇ ।
କାଳରେ ଶତ୍ରୁ ଜିଣି ହୋଇ ସେ ବିଜୟୀ । ୨୧୬ ।
କାର୍ଯ୍ୟ ବିନା ଯେ ନର କରେ ପରବାସ ।
ନ ବସଇ ପାପୀ ଲୋକଙ୍କର ପାଶ ।
ପର ସ୍ତ୍ରୀମାନଙ୍କୁ ନ କରେ ଧର୍ଷଣା ।
କପଟରେ ବୃଦ୍ଧି କର ଥାଏ ଉଣା ।
ମଦ୍ୟ ପାନ ଖେଳ ବେଶ୍ୟା ଏ ତିନି କଥା ।
ପଡ଼ିଲେ ହୃଦେ ଦେଉଥାଏ ମହା ବ୍ୟଥା ।
ଏବେ ଗୁଣ ଥିବା ଲୋକ ଇହଲୋକେ ।
କଦାଚିତେ ସିଜିନ ନ ପଡ଼ଇ ଶୋକେ । ୨୧୭ ।

ପଚାରିବାକୁ ଯେବେ ଡାକିବେ ସାକ୍ଷୀ କରି ।
ଯା ଜାଣି ଥିବ ତାହା କହିବ ସତ୍ୟ କରି । ୨୧୮ ।
ଅଳ୍ପ କଥା ପାଇଁ ଛାଡ଼ିବ ବିବାଦ ।
କଲେ ସେ ଦେହ ଆସି ପଡ଼ଇ ପ୍ରମାଦ । ୨୧୯ ।
ଯେଉଁ ଲୋକ ଉଦ୍ଧତ ହୋଇ ବେଗ କୋହେ ।
ମୁଁ ବଡ ବୋଲିକରି ଗର୍ବେ ନ ବଢ଼େ ।
ନ କହଇ ବଚନରେ କରୁ କଟୁ ।
କହିଲେ ଶୁଭୁଥାଇ କର୍ଣ୍ଣକୁ ଅତି ଗୁଠୁ ।
ସେହିଟି ଜଗତରେ ସର୍ବ ଜନ ପ୍ରିୟ ।
ହୁଅଇ ହେ ଅମ୍ବିକା ଦେବୀଙ୍କ ତନୟ । ୨୨୦ ।
ସମାନ ଲୋକଙ୍କୁଲେ ବିବାଦ ସମ୍ବନ୍ଧ ।
ସର୍ବ ଯେ କରୁଅଛୁ ସଦା ତାର ମୋଦ । ୨୨୧ ।
ଅତିଥିଙ୍କୁ ଦେଇ ଭୁଞ୍ଜିବ ଅଳପ ।
କ୍ଷଣେ ଶୋଇ ଛାଡ଼ିବ ଶୟନ ତଳପ ।
ଯଦ୍ୟ ଲୋକ ମାଗିଲେ ନିର୍ମଳ କରି ଧନ ।
ଗଣି ଦେଉଥିବ ନୋହିଣ ବିମନ ।
ଏ ରୂପେ ଯେଉଁଲୋକ ଏ ସଂସାରେ ଅଛୁ ।
ବିପତ୍ତି ତାହାଙ୍କୁ ଗ୍ରାସି ନ ପାରୁଛି । ୨୨୨ ।
ଉତ୍ତମ ଲୋକେ ଯାହା କହି ଥିବେ ବସି ।
ତାହା ଶୁଣି ମନେ ରଖୁଥିବ ଘୋଷି । ୨୨୩ ।

ଗାଈଙ୍କର ଅଘ୍ରାଣ, ଦ୍ୱିଜଙ୍କର ଶାସ୍ତ୍ର ।
ନୃପଙ୍କର ଚର, ଜନଙ୍କର ନେତ୍ର ।
ଜ୍ଞାନ ହୋଇବାକୁ ଏ ଅଟଇ କାରଣ ।
ଜାଣ ଅଟେ ଗାନ୍ଧାରୀ ଦେବୀଙ୍କ ରମଣ । ୧୧୪ ।
ବଳୀଅର ଲୋକର ଧରେ ହେ ଚରଣ ।
ଇନ୍ଦ୍ରଙ୍କୁ ନମସ୍କାର କଲା ପରି ଜାଣି । ୧୧୫ ।
ପରଦ୍ରବ୍ୟ ପର ସୌନ୍ଦର୍ଯ୍ୟକୁ ଦେଖି ।
ଯେଉଁ ନରମାନେ ହେଉଥାନ୍ତି ଦୁଃଖୀ ।
ତାହାଙ୍କ ଦେହରେଟି ମହାବ୍ୟାଧି ଘଟି ।
ଅଗଜର ବୁଜାଇ ଦଅର ଦୁଇ ପାଟି । ୧୧୬ ।
ବିଦ୍ୟାମଦ, ଧନମଦ, କୁଳମଦ ।
ଯେ ପିଇଛି ତାକୁଟି ପଡଇ ପ୍ରମାଦ ॥
ଇନ୍ଦ୍ରିୟ-ଘୋଡ଼ା, ଦେହ-ରଥରେ ମାନସ ।
ସାରଥି ବାନ୍ଧିଥିଲେ ନ ଲାଗଇ ତ୍ରାସ । ୧୧୭ ।
ମନକୁ ନ ଜିଣି ଯେ ଶତ୍ରୁକୁ ଜିଣିମା ।
ଇଚ୍ଛା କରେ ସେ ଜାଣ ପାଏ ଦୁଃଖ ସୀମା । ୧୧୮ ।
ଧର୍ମ ଅର୍ଥ ଛାଡ଼ି ଯେ ଇନ୍ଦ୍ରିୟ ବଶ ହୁଏ ।
ସଂପତ୍ତି ଛାଡ଼ି ପ୍ରାଣ ହରାଏଟି ସିଏ ।
ଧର୍ମ ଅର୍ଥ ଦୁହିଁଙ୍କି ଚାହିଁ ଯେ କାର୍ଯ୍ୟ କରେ ।
ସେ କଦାଚିତେ ଜାଣ ନ ପଡେ ବିପତ୍ତିରେ । ୧୩୯ ।

ଅସାଧୁ ଲୋକ ଭୂଲେ ସାଧୁ ଲୋକ ଯାଇ ।
ବସିଲେ ସ୍ୱଜନ ହେ ବିନାଶ ଲଭଇ ।
ଓଦା କାଷ୍ଠ ଶୁଖିଲା କାଷ୍ଠରେ ମିଶାଇଲେ ।
ଜଳି ତ ଯାଉଅଛି ଦେଖ ଥାଇଁ ଭଲେ ।
ଏ ସକାଶୁଁ ସାଧୁ ଲୋକ ଯେ ହୋଇବ ।
ଅସାଧୁ ଲୋକ ସଙ୍ଗ ସ୍ୱପନେ ନ କରିବ । ୧୩୦ ।
ଅନସୂୟା, ଦମ, ଶଉଚ, ଆର୍ଜବ ।
ଅସାଧୁଙ୍କୁ ଛଡ଼ି ଥାନ୍ତି ନରଦେବ । ୧୩୧ ।
ଦୁର୍ଜନ ଲୋକଠାରେ ସୁକୃତ ବଚନ ।
ଦାନ ଅମ୍ନାଜ୍ଞାନ ନ କରନ୍ତି ସ୍ନାନ । ୧୩୨ ।
କାର୍ଯ୍ୟକୁ ଅନୁରୂପ ବଚନ ଯାହାର ।
କାହାରିକି ଦୁଃଖଟି ନ ହୁଅଇ ତାହାର । ୧୩୩ ।
ସବୁ ତୀର୍ଥମାନଙ୍କରେ ବୁଲି ସ୍ନାନ ।
କରିବା ପ୍ରଭୃତି ନିଷ୍କପଟ ଭଲ ଜାଣ । ୧୩୪ ।
ବୋଇତ ବଣିକାର, କୃଷକ ଯେ ଚୋର ।
ବୈଦ୍ୟ, ଷଣ୍ଢ, ମିତ୍ର, ଜାଠୁଅ ଅନ୍ଧ ନର ।
ମାନଙ୍କୁ ଭୋଳ ହେଲେ ନ କରିବ ସାକ୍ଷୀ ।
ଅବଶ୍ୟ ସେ କଥା କହନ୍ତି ପଟରେ । ୧୩୫ ।
ଦିନ୍ତ ଭିତରେ ଯେ ଛୁଣ୍ଡାଇ ଥାଏ କାର୍ଯ୍ୟ ।
ରାତ୍ରି ସୁଖରେ ସେ ଶୁଅଇ ମହାରାଜ । ୧୩୬ ।

ଅଜନ୍ମରୁ ଜୀବନ ଥିବା ଯାଏ ଲୋକ ।
ଜଗିଥିବ ପର ଲୋକ ତଥାଯାକ ।୧୩୭ ।
ପର ଯେବେ ବୋଲିବ ନିଷ୍ଠୁର ବଚନ ।
ତେବେ ତୁଚ୍ଛ ନ ବୋଲି ହୋଇବ ମଉନ ।୧୩୮।
କହିବା ଅପେକ୍ଷାରେ ନ କହିବା ଭଲ ।
କହିଲେ ସତ୍ୟ ଧର୍ମ ଥିବ ସେ ବାଣୀଭଲ । ୧୩୯ ।
ଦୁଃଖ ସୁଖ, ଜନମ, ମରଣ, କ୍ଷୟ ବୃଦ୍ଧି ।
ଏମାନ ଲଭିନ୍ତି ତ ସର୍ବି ଅବଧି । ୧୪୦ ।
ଆତ୍ମଜ୍ଞାନ, ଇନ୍ଦ୍ରିୟ ନିଗ୍ରହ, ଲୋଭ ତ୍ୟାଗ ।
କର ନୃପ ପାଇବ ତୁମ୍ଭେ ସୁଖ ଭୋଗ । ୧୪୧ ।
ଧନ ଥାଇ ଭୋଗକୁ ଯା ଦେହ ଭଲ ନାହିଁ ।
ସବୁ ଗୁଣ ଯାକର ଅଧର ଅଟେ ସେହି । ୧୪୨।
ଶ୍ରେଟିମାନେ ଧନ ପାଇଲେ ହେଲେ ଦୁଃଖ ।
ପାଉଥାନ୍ତି ସ୍ୱପନେ ନ ଦେଖନ୍ତି ସୁଖ । ୧୪୩ ।
ଅସାଧୁ ସେବା ଚଉରୁ, କ୍ରୋଧ ଶ୍ରୀ ନାଶଇ ।
ଏକା ଅଭିମାନ ସବୁ ବିଲୋପ କରଇ । ୧୪୪ ।
ବିପତ୍ତି ଦେବ ବୋଲି ରଖିଥିବ ଧନ ।
ଧନ ଦେଇ ଭାର୍ଯ୍ୟା କରିବ ରକ୍ଷଣ । ୧୪୫ ।
ଜାଣିବା ଲୋକମାନେ ପରିହାସେ ଜୁଅ ।
ଖେଳିବାକୁ ସ୍ୱଜନ ନ କରନ୍ତି ପ୍ରିୟ । ୧୪୬ ।

ଅଗର୍ବୀ, ଦୟାବନ୍ତ, ଅରୋଗୀ, ପଣ୍ଡିତ ।
ଅଲୁବ୍ଧ, ଜିତାତ୍ମା, ବାକ୍‌ପଟୁ, କୁଳୀନ ।
ଏତେ ଗୁଣ ଥିବା ଲୋକ ଭୃତ୍ୟ ହେଲେ ।
ଉତ୍ତମ କାର୍ଯ୍ୟ ସର୍ବେ ହୁଅଛନ୍ତି ଭଲେ । ୧୪୭ ।
ବାହୁବଳ, ମିତ୍ରବଳ, ଧନବଳ ।
ଆପଣା ଅଭିଜାତବଳ, ପ୍ରଜ୍ଞାବଳ ।
ଏ ପାଞ୍ଚେ ଯାହା ହେତେ ସମ୍ପୂର୍ଣ ହୋଇଥାନ୍ତି ।
ତାହାଙ୍କୁ କେହି ବାଧି ନ ପାରନ୍ତି । ୧୪୮ ।
ସ୍ତ୍ରୀ, ରଜା, ଶତ୍ରୁ, ସର୍ପ, ବେଦସେବା ।
ଜନଙ୍କୁ ଆପଣାର ବୋଲନ୍ତି ନ ଭାବ । ୧୪୯
ଅକ୍ରୋଧନ ହୋଇ ଯେ ନେଉଥିବ ଧନ ।
କରିଥିବ ଯେତେ ପୂଜାରେ ସମଜ୍ଞାନ ।
ଶୋକ ଶତ କଦା ସ୍ପୃଶିବ ନ ଯେବେ ।
ପ୍ରିୟ ଅପ୍ରିୟରେ ଉଦାସୀନ ହେବ ।
ଏ ରୂପେ ଯେଉଁ ଲୋକ ଅଛି ନରବ୍ୟାଘ୍ରେ ।
ପଣ୍ଡିତ ବୋଲି ତାଙ୍କୁ ବୋଲନ୍ତି ସର୍ବେ । ୧୫୦ ।
ବୁଦ୍ଧିମନ୍ତ ଲୋକର ଅପକାର କରି ।
ନିଶ୍ଚିନ୍ତ ହେଲେ ନୃପ ଅବଶ୍ୟନ୍ତି ମରି । ୧୫୧ ।
ବୁଦ୍ଧିମନ୍ତ ଲୋକ ବ୍ୟଗ୍ରତା ଉପେକ୍ଷି ।
ଯତ୍ନ କଲେ ଫଳ ଲଭି ହୁଏ ସୁଖୀ । ୧୫୨ ।

ଅବିଶ୍ୱାସୀ ଲୋକଙ୍କୁ ବିଶ୍ୱାସ କଲେ ନର ।
ସମୂଳେ ହୋଇଜାଣ ନାଶ ହୁଏ ତାର । ୧୫୧ ।
ଭରଷା ନ କରିବ, ହୋଇବ ମୁକ୍ତ ଦ୍ୱାର ।
କହିବ ପ୍ରିୟ ବଶ ନୋହିବ ସ୍ତ୍ରୀଙ୍କର ॥
ପିତାଙ୍କ ଅନ୍ତଃପୁର ମାତାଙ୍କ ହାଣ୍ଡିଶାଳ ।
ଦେଇ ଦୃଷ ଦେଖିବ ଯେ ହେବ କୁଶଳ । ୧୫୩ ।
ବନ ପର୍ବତରେ ଏକାନ୍ତ ମନ୍ଦିରରେ ।
ଭାବିବ ରାଜାବଧି ମନ୍ତ୍ରୀଙ୍କ ସଙ୍ଗତରେ । ୧୫୪ ।
ଲୋକର ଭଲମନ୍ଦ ବରଷ ପାଞ୍ଚବୁଝି ।
ତେବେ ତାଙ୍କୁ କହିବ ବସାଇ ସଭାମଝି । ୧୫୫ ।
ବିଦ୍ୟାବୃଦ୍ଧ, ବୟୋବୃଦ୍ଧ, ଧନବୃଦ୍ଧ ।
ଲୋକଙ୍କୁ ନିନ୍ଦା କରୁଥାନ୍ତି ମୂର୍ଖବୃନ୍ଦ । ୧୫୬ ।
ସମସ୍ତ ନ ବର୍ତ୍ତିର ଦେଉଥିବ ଦାନ ।
ସାଧୁମାର୍ଗେ ଥାଇ କହିବ ବଚନ । ୧୫୭ ।
ଧୃତି, ଶମ, ଦମ, ଶଉଚ, କାରୁଣ୍ୟ ।
ଅନିଷ୍ଠୁର ବଚନ ସମ୍ପତ୍ତି କାରଣ । ୧୫୮ ।
କୃତଘ୍ନ, ଦୁଷ୍ଟଆତ୍ମା, ନିର୍ଲଜ୍ଜ ଲୋକଙ୍କୁ ।
ଛାଡ଼ିଦେବ ନ କହୁ ପ୍ରଥମୁ କଥାକୁ । ୧୫୯ ।
ଯାହାକୁ ବେଶ୍ୟା ସ୍ତ୍ରୀ, ନାଚୁଆ, ଜୁଆର ।
ପ୍ରଶଂସନ୍ତି ଜାଣ ବ୍ୟର୍ଥ ତା ଶରୀର । ୧୬୦ ।

ନୀଚପ୍ରୀତି ଅଳପରେ ନାଶ ଯାଏ ।
ଉତ୍ତମଲୋକ ପ୍ରୀତିଟି ବହୁତ କାଳ ଥାଏ । ୧୬୧ ।
ଦରିଦ୍ର କ୍ଷୀଣର ଯେ କରଇ ଅନୁଗ୍ରହ ।
ତାହାର ସୁଖଟି ଅଟଇ ଅକହ । ୧୬୨ ।
ଦୁଷ୍ଟ ମନ୍ତ୍ରୀଠାରେ ମନ୍ତ୍ର ଯେ ଭାଳଇ ।
ଜାଣି ଜାଣି ଅଗ୍ନିକୁ ନୋଢ଼ଣୀ ଥଣଇଁ । ୧୬୩ ।
ଶାସ୍ତ୍ର ଜାଣି ବୁଢ଼ା ଜନଙ୍କୁ ଯେ ସେଟବ ।
ପଡ଼ିଲେ କାର୍ଯ୍ୟକୁ ସେ ଭୁଲାଇ ନାଏ ଛଟବ । ୧୬୪ ।
ବରଷ ଯାଏ ବୁଝି ଲୋକର ଆଚରଣ ।
ଯତ୍ନେ କରିବ ହେ ମହୀଶ ନରଗଣ । ୧୬୫ ।
ବଳସ୍ତ୍ର, ପରାକ୍ରମ, କ୍ଷମା, ଆଚରଣ ।
ଅକୀର୍ତ୍ତି, ଅନରଥ, କ୍ରୋଧ, ଅଲକ୍ଷଣ ।
ସେ ଗୃହଦ୍ଦେଁ ଏ ଶୃଙ୍ଖଳର ବିନାଶକୁ ।
ବିଧାତା କରିଅଛୁ ଶାଣହେ ମନକୁ । । ୧୬୬ ।
ପଣ୍ଡିତ, ମୂର୍ଖ, ଅଧର୍ମୀ ଭୂଲେ ମଇଷ ।
ତେବେ ନ କରିବ ସେ ହେଲେ ରାଜପୁତ୍ର ।
ଧାର୍ମିକ ଲୋକ ଭୁଲେ ମହତ୍ତ୍ୱ କଲେ ।
ଧରମଟି ତହୁଁ ଉପୁଜନ୍ତି ଭଲେ । ୧୬୭ ।
ପ୍ରଭୁ ହେବା ଲୋକ ନ ହେଲେ କ୍ଷମାକର ।
ତାହାଙ୍କୁଟି ଲକ୍ଷ୍ମୀ ଯାଆନ୍ତି କରି ଦୂର । ୧୬୮ ।

ସକଳ ବୁଦ୍ଧି ଲୋକଠାରେ ବଳା ବୁଦ୍ଧି ।
ନରେ ଦୁଷ୍ଟ କଥା କରନ୍ତି ଅବଧି । ୨୬୯ ।
ଅତିଦାତା, ଅତିଶୂର, ଅତିବ୍ରତ ।
ଏମାନଙ୍କ ଲକ୍ଷ୍ମୀଟି ନୁଅଇ ଜାଣ ହେତ । ୨୭୦ ।
ବୁଦ୍ଧିମନ୍ତ ଲୋକର ତାହାଠାରେ ଶଙ୍କା ।
ନ ଉପୁଜେ ଅଗଂତ ଶତ୍ରୁ ସେ ଥାଏ ଦଙ୍କା । ୨୭୧ ।
ଫଳ, ଜଳ, ମୂଳ, ଖୀର, ଅଉଷଧ ।
କଲ ନ ପାରନ୍ତି ଏ ନୃପତି ବ୍ରତବାଧ । ୨୭୨ ।
ପୁଣ୍ୟ, ପାପ ବିନା ଧନ ଦେହ ଦୁଇ ।
କାହାର ରହୁନାହିଁ, ଅଟେ ନଶପାଇଁ । ୨୭୩ ।
ଆତ୍ମା-ନଦୀ, ସତ୍ୟ-ଜଳ, ପୁଣ୍ୟ-ତୀର୍ଥ ।
ଏଥିରେ ସ୍ନାନ କର ହୋଇବ କୃତାର୍ଥ । ୨୭୪ ।
ବେଦ ପଢି ପ୍ରବୃତ୍ତି ମାର୍ଗକୁ ଛାଡ କର ।
ନିବୃତ୍ତି ମାର୍ଗ ବଳେ ଯାଥାନ୍ତି ସେ ତର । ୨୭୫ ।
ସବୁ ଜୀବଙ୍କୁ ଯେ ସମାନ ଦେଖେ ବିପ୍ରେ ।
ସର୍ବଦରଶୀଟି ସେ ଜଗତେ ବୋଲାଏ । ୨୭୬ ।
ବ୍ରହ୍ମଚର୍ଯ୍ୟ କରିବାରୁଟି ବ୍ରାହ୍ମଣେ ।
ଋଷି ବୋଲି ସବୁରି ବଚନ ବଖାଣେ ।
ବ୍ରହ୍ମଚର୍ଯ୍ୟରଟି ଏ ଅଟେ ଗୁଣ ବିପ୍ରେ ।
ଯେ ଯାହା ଭାବ କରେ ସେ ସେହି କଥା ପାଏ । ୨୭୭ ।

ବ୍ରହ୍ମାଣ୍ଡ ସୃଜନା କାଳରେ ଅମୃତ ।
ଜନମି ଜାତ କଲ ପଞ୍ଚ ମହାଭୂତ ।
ପଞ୍ଚମହାଭୂତେ ଦେହକୁ ଜାତ କଲେ ।
ତହିଁ ଜୀବ ପରମ ଆତ୍ମାନ୍ତ ହେଲେ ।
ଯେ ଯାହାଠାରୁ ଜନ୍ମ ସେ ତାହାଠାରେ ଲୀନ ।
ହୋଇ ବ୍ରହ୍ମାଠାରେ ମିଶୁଛନ୍ତି ଜାଣ । ୧୭୮ ।
ସର୍ବ ପ୍ରାଣୀ ଆତ୍ମାକୁ ଏକ ଯେ ମଣେ ସ୍ୱୟେ ।
ଶୋକ ଦୁଃଖ ତାହାର ନ ରହେ ହୃଦୟେ । ୧୭୯
ତୁମ୍ଭମାନଙ୍କର ପିତା·ପୂର୍ବ ମୁହିଁ (ବ୍ରହ୍ମ) ।
ଏ ଜଗତ ଯାକର ଆତ୍ମା ମୁଁ ଅଟଇଁ ।
ମୋ ଆତ୍ମାନେ ତୁମ୍ଭେମାନେ ମଧ୍ୟ ଅଛ ।
ସତେ ଏ ଆତ୍ମା ଦେହୀଙ୍କର ବସ୍ତୁ । ୧୮୦ ।
ତୁମ୍ଭର ମୁଁ ନୁହଇ ତୁମ୍ଭେ ମୋର ନୁହ ।
ଏଥିରେ କିଛୁ ସ୍ୱୟେ ନ ଦେଖ ହେ ମୋହ । ୧୮୧ ।
ଆତ୍ମା ମୋହରଇ ଅଟଇ ଜନ୍ମସ୍ଥାନ ।
ଆତ୍ମା ଜାଣ ସବୁ ଜୀବର ଜନକ ।
ଅଣୁରୁ ଅଣୁଟିଏ ଅଟଇ ଆତମା ।
କେ ଜାଣି ପାରିବ ସେ ଆତ୍ମାର ମହିମା । ୧୮୨ ।
କାମ, କ୍ରୋଧ, ମୋହ, ମନ୍ୟୁ, ନିଦ୍ରା, ଈର୍ଷା ।
ଦମବନ୍ତ ହେଲେଟି ନ କରନ୍ତି ବଶୀ । ୧୮୩ ।

ଦମବନ୍ତ ଲୋକ ଇହପର ଦୂର ।
ତଣଠାରୁ ଏଥିରେ ସନ୍ଦେହ କିଛି ନାହିଁ । ୧୮୪ ।
ପ୍ରାଣିଙ୍କର ହୁଅଇ ଯାହା ଦେଖି ଭୟ ।
ତାହାଠାରୁ ଲୋକରେ ନୃହଇ ଉଦୟ । ୧୮୫ ।
ସମୁଦ୍ର ପରି ଗମ୍ଭୀରତା ଗୁଣ ବହି ।
ସବୁ ପ୍ରାଣିଙ୍କର ହିତେ ଯେ ଥାଏ ରହି ॥
ସାଧୁ ଲୋକ ମାର୍ଗକୁ ଆଚରୁଥାଏ ନିତି ।
ତାକୁ ବହିଦେଇ ନ ପାରେ ବିପତ୍ତି । ୧୮୬ ।
ଜ୍ଞାନତୃପ୍ତ ଲୋକ ବିଷୟ ଛାଡ଼ିଦେଇ ।
ବଢ଼ିଲେ ବୃଦ୍ଧଙ୍କୁ ସେ ବ୍ରହ୍ମଙ୍କୁ ପାଏ ଯାଇଁ । ୧୮୭ ।
ଅବାଟେ ପଙ୍କ ମାର୍ଗ ନୋହିଲା ପରି ଜଣା ।
ଜ୍ଞାନଲୋକ ମାର୍ଗକୁ ହୁଅଇ ଅଜଣା । ୧୮୮ ।
ଯେଉଁ ଲୋକ ଦୋଷକୁ କରଇ ସୀକାର ।
ପୁଅ, ଭାର୍ଯ୍ୟାଠାରେ ନ କରେ ସେ ଅଦର । ୧୮୯ ।
ଲୁଚେ ନାତ ହେବା ଲୋକର ହେଲେ ଲୋଭ ।
ଜ୍ଞାନ ତାକୁ ଦୃଷ୍ଟି ହୁଅଇ ଦୁର୍ଲ୍ଲଭ ।
ଜ୍ଞାନ ନୋହିବାରୁ ଲଜ୍ଜା ମଧ ଯାଏ ।
ଲଜ୍ଜା ନ ଥିବାରୁ ଧର୍ମ ଶ୍ରୀ କ୍ଷୟ ହୁଏ ।
ଧର୍ମ ଶ୍ରୀ ହତ ହେବା ଲୋକକୁ ବଇବତ ।
ମାନେ ଛାଡ଼ନ୍ତି କରି ଦୁଃଖ ଚତୁ । ୧୯୦ ।

ମରଣ ଅପେକ୍ଷାରେ ନିର୍ଧନ ଅଟେ ବଡ଼ ।
ଯାହା ଯେଣିକ ନିତ୍ୟ ଭାଳଇ ଦୁଃଖେ ହାଡ଼ ।୨୧୧ ।
ଦରିଦ୍ର ହେବା ଲୋକ ପେଟେ ଖାଇ ଦେଇ ।
ଲୋକଙ୍କୁ ଦେଖିଲେ ସେ ମାଗଇ ପୁଣି ଯାଇ ।
ଧନ ଥିବା ଲୋକେ ଏ ରୂପେ ନୁହନ୍ତି ।
ଯେତେ ତେତେ ଖାଇଲେ ତୃପତି ହୁଅନ୍ତି । ୨୧୨ ।
ଧନବନ୍ତ ଲୋକେ ପାଳନ୍ତି ଧର୍ମ ଅର୍ଜି ।
ଅଧନବନ୍ତେ ତାହା ଥାଅନ୍ତି ବରଜି । ୨୧୩ ।
ଧନ ଗଲେ ଧର୍ମ, ଅର୍ଥ, କାମ ଯାଏ ।
ଅତେ କୃଷ୍ଣ ଜପ କହିବ ଗୁଡ଼ାଏ । ୨୧୪ ।
ଦ୍ରବ୍ୟ ପାଇଁ ଲୋକେ ଶତ୍ରୁଠାରେ ରହି ।
ଧନ ନେଉଛନ୍ତି ନିକଟସ୍ଥ ହୋଇ । ୨୧୫ ।
ଜନ୍ମରୁ ଦୁଃଖୀ ହୋଇ ଅଛି ଯା ଶରୀର ।
ପଡ଼ିଲେ ଦୁଃଖ ନ ବୁଝାଏଟି ସେ ଛାର । ୨୧୬ ।
ସୁଖୀ ଲୋକ ଯେବେ ଦୁଃଖକୁ ଲଭଇ ।
ତେବେ ସେ ମରଣରେ ସେ କଥା ଗଣଇ । ୨୧୭ ।
ଅପଣା ଅପରାଧେ ପାଇ ଲୋକ ଦୁଃଖ ।
ବୋଲଇ ଦୁଃଖ ଦେଲେ ଦଇବ ମୂର୍ଖ । ୨୧୮ ।
ଲଜ୍ଜା ଯାର ନାହିଁ ସେ ସ୍ତ୍ରୀ ପୁରୁଷରେ ।
ଲେଖା ନୁହଇ ହେ କୃଷ୍ଣ ସେ ହୋସରେ ॥

ଲଜ୍ଜାହୀନ ଲୋକର ଧର୍ମରେ ଅଧିକାର ।
ନୁହଇ କହିଛନ୍ତି ଜାଣ ହେ ଯଦୁବୀର ।
ଲଜ୍ଜାବନ୍ତ ଲୋକଙ୍କ ଧର୍ମକୁ ମାନନ୍ତି ।
ସେ ଜେନ ପୁଣ୍ୟ ଲୋକେ ତା ହୁଏ ଉପସ୍ଥିତି । ୨୯୯ ।
ଯେଉଁ ଲୋକ ଲୋକଙ୍କୁ କରଇ ଉଦ୍ବିଗ୍ନ ।
ଜୀବନ ଥିଲେ ତାର ନ ଥିଲା ପରି ଜାଣ । ୩୦୦ ।
କ୍ଷତ୍ରିୟ ଯୁଦ୍ଧେ ମଲେ ଲଭଇ ସ୍ୱର୍ଗ ସ୍ଥାନ ।
ଛାଡିଲେ ମସ୍ତି ସ୍ୱର୍ଗେ ହୁଅଇ ଭୋଗ ଜାଣ । ୩୦୧ ।
ପାପ, ତାପ, ଦାରିଦ୍ର୍ୟ, କରଇ ଯେ ନାଶ ।
ତାହାର କି ଉଣା ହୋଇଛନ୍ତି ଅୟୁ, ଯଶ । ୩୦୨ ।
ମନୁଷ୍ୟ ବିଚାରିବା କଥାକୁ ବହୁ-ବାର ।
ଉଡ଼ାଇ ଦେଇଯାଏ ଯେଣିକ ହୁଏ ଚତୁର । ୩୦୩ ।
ପୌରୁଷ ବଳେ ଯେଉଁ କର୍ମ ହୋଇଥାଏ ।
ଦଇବ ବଳେ ପୁଣି ସେହୁ ନାଶ ଯାଏ । ୩୦୪ ।
ଶୀତ, ଉଷ୍ଣ, ବର୍ଷା ଦଇବର କୃତ୍ୟ ।
ଦେଖୁଥାଇ ହେଉଛି ପୁରୁଷ କର୍ମେ ହତ ।
ପୁରୁଷ, ଦଇବ ଦୁଇଯାକ ମିଶି ।
ଯେଉଁ କଥା ହୁଅଇ ସେ ହୁଏ ଅବିନାଶୀ । ୩୦୫ ।
ସଚ୍ଚରିତ ହେଲେ ସେନା ଲୋକ ଶ୍ରେଷ୍ଠ ।
ବୋଲାଏ ଅନ୍ୟ କଥା ମାନ ସବୁ ଭ୍ରଷ୍ଟ । ୩୦୬ ।

ଭାଇ, ପୁତ୍ର, ମିତ୍ର, ଜ୍ଞାତି, ବନ୍ଧୁ-ଶ୍ରେଷ୍ଠ ।
ବଶ୍ୟ ହେଲେ ପାଇବ ମହତ ଉଦୟ । ୩୦୭ ।
ଅପଣା ମତ ଛାଡ଼ି ପରମତ ହିତ ।
ଦେଲେ ତାହା କରିବ ଯେ ଦେବ ପଣ୍ଡିତ । ୩୦୮ ।
ସାଧୁ ଲୋକ ମତ ଯେ, ଅନାଦର କରେ ।
ତା କଥା ଲୋଖା ନୁହନ୍ତି ବୃଥା ଭ୍ରମରେ । ୩୦୯ ।
କାମ, କ୍ରୋଧ, ଲୋଭ ଦର୍ପ ଯେ ଜିଣିଛୁ ।
ମହା ସୁଖ ପାଇ ମଙ୍ଗଳ ସେ ଭୁଞ୍ଜୁଛି । ୩୧୦ ।
ସୁହୃଦମାନଙ୍କର କ୍ଷୋଭରେ ଯେ ନ ରହେ ।
ଶତ୍ରୁ ଘର ସଂପତ୍ତି ବୃଦ୍ଧି କରୁ ଥାଏ । ୩୧୧ ।
ଲୋଭ କଲେ ଲୋକ ନ ପାଇ ସଂପତ୍ତି ।
ଇଚ୍ଛା ସୁଖେ ଲୋଡ଼ି ଅଣଇ ବିପତ୍ତି । ୩୧୨ ।
ଦାନ, ତପ, ବିଦ୍ୟା, ଶଉର୍ଯ୍ୟରେ ଖ୍ୟାତ ।
ଯେ ନୋହେ ପ୍ରୌଢ଼ ହେଲେ ବୋଲାଏ ସେ ମୂଢ଼ । ୩୧୩ ।
ଯୁଦ୍ଧ କଲା ଲୋକଙ୍କୁ ସ୍ୱର୍ଗଦ୍ୱାର ବାଟ ।
ଫିଟୁ ଥାଏ ତା ପାଇଁ ନ ପଡ଼ି କବାଟ । ୩୧୪ ।
ଯାହାର ଅନ୍ନ ଖାଇ ତାହାର ମନ୍ଦ କାମ ।
ଜାଣି ଛାଡ଼ି ଗଲେ ଲଭଇ ପଦ୍-ଜାଳ । ୩୧୫ ।
ଶୁଭ ଅଶୁଭରେ ଈଶ୍ୱର କାରଣ ।
କାଠ କଣ୍ଢେଇଟି ପୁରୁଷ ନରଗଣ । ୩୧୬ ।

ନ ପଳାଇବା ଲୋକ ପାଶକୁ ପଶ୍ଚାତ ।
କ୍ଷଣିକ ପାରନ୍ତି ଅହେ ନରେଶ । ୩୧୭ ।
ଏକା ସିଂହ ଗୋଟିକୁ ବଳୁଆ କୋଟି କୋଟି ।
ଗୋଟି ହେଲେ ନେଇ ନ ପାରନ୍ତି ପ୍ରାଣଟି । ୩୧୮ ।
ସିଂହ ପର ଜନ୍ତୁ ଅଜାଗରୂପ ହେଲେ ।
ବଳୁଆ ପ୍ରାଣ ଭୟ ଦେଖି ଥାଟି ଚଳେ । ୩୧୯ ।
ସତ୍ୟ ବୋଲ ତାତ ଅମ୍ଭଙ୍କୁ କହ ।
ବର୍ତ୍ତିଲେ ଅଧିକ ଚାହାର କେବେ ନାହିଁ । ୩୨୦ ।
ମୁଁ ମଲି ମତେ ମାରିଲ ଯେ ବୋଲଇ ।
ତା ଠାରୁ ନ ଜାଣିମା ଲୋକ ଅଜ୍ଞ ନାହିଁ । ୩୨୧ ।
ଅମ୍ଭଙ୍କୁ ମାରିବାକୁ ନାହାନ୍ତି କାହିଁ ନର ।
ସବୁକାଳେ ଅମ୍ଭେ ତ ଅଟଇ ଅମର । ୩୨୨ ।
ପୁରୁଣା ଛାଡ଼ି ନୂଆ ପିନ୍ଧିବା ପରାଏ ।
ଆତମାଟି ଯାଇ ନୂଆ ଦେହ ପାଏ । ୩୨୩ ।
ଜନମିଲେ ମୃତ୍ୟୁ, ମୃତ୍ୟୁ ହେଲେ ଜନ୍ମ ।
ହେଉଛି ତ ଅବଶ୍ୟ ଏ ସଂସାର କର୍ମ ।
ପ୍ରକୃତିରୁ ଦେହ ତ ହୋଇ ଥାଏ ଜାତ ।
କେତେ କାଳ ମଧ୍ୟରେ ହୁଅଇ ବ୍ୟକତ ।
ପୁଣି ପ୍ରକୃତିରେ ସେ ଲୀନକୁ ଭଜଇ ।
ତହିଁର ଦୁଃଖ କରିବାର ନ ଯୋଗାଇ । ୩୨୪ ।

ଆସକ୍ତି ସକାଶରୁ କାମ ହୋଏ ଜାତ ।
କାମରୁ କ୍ରୋଧ ପୁଣି ହୁଅଇ ସମ୍ଭୂତ ।
କ୍ରୋଧରୁ ମୋହ ହୁଏ ମୋହରୁ ସ୍ମୃତି ଭ୍ରଂଶ ।
ସ୍ମୃତି ଭ୍ରଂଶରୁ ହୁଅଇ ବୁଦ୍ଧି ନାଶ ।
ବୁଦ୍ଧି ନାଶ ଗଲେ ମନ୍ଦ ପଇ ହୋଇ ।
ଲଭଇନ୍ତି ଶାନ୍ତି ସେ ଏ ମର୍ତ୍ତ୍ୟରେ ଜୀବ । ୩/୫ ।
ପରଧର୍ମ ପ୍ରତିକ ଆପଣା ଧରମ ।
ନଉନ ହେଲେ ମଧ୍ୟ ଅଟଇ ଉତ୍ତମ ।
ସ୍ୱଧର୍ମରେ ମରଣ ଅଟଇ ଶ୍ରେୟ ।
ପରଧର୍ମେ ପାଏ ନରକ ଅଶ୍ରେୟ । ୩/୬ ।
ଆସକ୍ତ ହୋଇ କର କର୍ମକୁ ଯେ କରେ ।
ନ ପଡ଼ଇ କେବେ ସଂସାର ବନ୍ଧନରେ । ୩/୭ ।
ଅଜ, ଅବିନାଶୀ, ଈଶ୍ୱର ମୁଁ (ଶ୍ରୀକୃଷ୍ଣ) ଅଟେ ।
ମୋ ମାୟାରେ ମୁହିଁ ମର୍ତ୍ତ୍ୟରେ ଅବତରେ ।
ଯେବେ ଧର୍ମ ଯାଇ ଅଧର୍ମ ପ୍ରବର୍ତ୍ତଇ ।
ତେବେହିଁ ମୁଁ ଆସି ମର୍ତ୍ତ୍ୟରେ ଜନମଇ ।
ସାଧୁ ପରିତ୍ରାଣ ଦୁଷ୍ଟର ସଂହାରଣ ।
କରଇ ଧର୍ମ ସ୍ଥାପି ପ୍ରତି ଯୁଗେ ଜାଣ । ୩/୮ ।
ନିଷ୍କାମ ହୋଇ ଜ୍ଞାନ ଅନ୍ତରେ ସ୍ୱଚ୍ଛ ।
ହୋଇ ବସ୍ତୁ, କର୍ମରେ ଦେଇ ଯେ ଥାଏ ଚିତ୍ତ ।

ତାହାଙ୍କ ସବୁ କର୍ମମାନ ଲୋପ ହୋଇ ।
ପ୍ରାପ୍ତେ ମୋ ସମୀପକୁ ହଅନ୍ତି ପୃଥଇ । ୩୨୯ ।
ବ୍ରହ୍ମଚର୍ଯ୍ୟମାନେ ସଂଯମ ଅଗ୍ନିରେ ।
ଇନ୍ଦ୍ରିୟ ଘୃତ ହୋମ କରନ୍ତି ଯତ୍ନରେ । ୨୩୦ ।
ଗୃହୀଜନେ ଇନ୍ଦ୍ରିୟ-ଅଗ୍ନିରେ ବିଷୟ ।
ଘୃତକୁ ଢାଳୁଥାନ୍ତି କହୁ କରି ପ୍ରିୟ । ୩୩୧ ।
ଧ୍ୟାନ ନଷ୍ଟେ ଜ୍ଞାନଇନ୍ଦ୍ରିୟ, କର୍ମେନ୍ଦ୍ରିୟ ।
ପ୍ରାଣ କର୍ମ କରନ୍ତି ଧ୍ୟାନାଗ୍ନିରେ ଲୟ । ୩୩୨ ।
ଦାନଯଜ୍ଞ, ତପୋଯଜ୍ଞ, ଯୋଗଯଜ୍ଞ ।
ବେଦଯଜ୍ଞ କରନ୍ତି କେହୁ ହେ ପାର୍ଥ ବିଜ୍ଞ ।
ଦ୍ରବ୍ୟମୟ ଯଜ୍ଞ ପ୍ରତି ଜ୍ଞାନ ଯଜ୍ଞ ।
ବଡ଼ ବୋଲି କହୁ ଅଛନ୍ତି ସବୁ ବିଜ୍ଞ । ୩୩୩ ।
ଶ୍ରୀକୃଷ୍ଣ ବୋଇଲେ ହେ ସନ୍ୟାସ କର୍ମଯୋଗ ।
ମୋକ୍ଷ କର ବୋଲି ଜାଣ ମହାଭାଗ । ୩୩୪ ।
ସନ୍ୟାସରୁ ପ୍ରତି କର୍ମଯୋଗ ଶ୍ରେଷ୍ଠ ।
ଜାଣି ଆଚରନ୍ତି ତା ନରେ କରି ଇଷ୍ଟ । ୩୩୫ ।
ଯେଉଁ ଲୋକ ଦ୍ୱେଷ ଆକାଂକ୍ଷା ନ କରଇ ।
ନିତ୍ୟ ସନ୍ୟାସୀନ୍ତ ପାର୍ଥ ତାକୁ କହି । ୩୩୬ ।
ସନ୍ୟାସ କର୍ମଯୋଗ ଏକ ଯେ ଦେଖଇ ।
ଜାଣିବାର ବୋଲି ତାହାକୁଟି କହି । ୩୩୭ ।

ମୋତେ(ଶ୍ରୀକୃଷ୍ଣଙ୍କୁ) ଅନେକ ଭକ୍ତ ବନ୍ଧୁତ ଲୋକମାନେ ।
ମୋ ରୂପ ପାଇଛନ୍ତି ବହୁଯତ୍ନ ଘେନ ମନେ ।
ମୋଠାରେ ଯେ ଯେଉଁରୂପେ ପଶଇ ଶରଣ ।
ସେ ରୂପେ ମୁଁ ତାଙ୍କୁ ଭଜଇଟି ଜାଣ । ୩୩୮ ।
ଈଶ୍ୱରଠାରେ କର୍ମ ଫଳକୁ ସମର୍ପଇ ।
କର୍ମଫଳ ଛାଡ଼ି କର୍ମକୁ ଯେ କରଇ ।
ପାପରେ ସେ କେବେ ନୁହଇ ଲିପତ ।
ପଦ୍ମପତ୍ର ଜଳ ପରାଏ ହୋଏ ଖ୍ୟାତ । ୩୩୯ ।
ଜ୍ଞାନ ତ ଅଜ୍ଞାନରେ ଅବୃତ ହୋଇଛି ।
ତେଣୁ ଜୀବ ଭଗବାନଙ୍କୁ ଜାଣୁଛି । ୩୪୦ ।
ବୁଦ୍ଧି, ମନ, ନିଷ୍ଠା, ଆଶ୍ରୟ ଈଶ୍ୱର- ।
ଠାରେ ହେଲେ ବିଗତ ପାପ ହୋଇ ନର ।
ମୁକତି ଲଭଇ ସନ୍ଦେହ ଏଥି ନାହିଁ ।
ବୀରକୁଳ ଗଉରବ ମର୍ଦ୍ଦନ ପାର୍ଥଭାଇ । ୩୪୧ ।
ବିଦ୍ୟାବନ୍ତ ଦ୍ୱିଜ, ଚଣ୍ଡାଳ, ଗାଈ, ହାତୀ ।
କୁକୁରରେ ଯାହାର ସମାନ ଅଟେ ମତି ।
ତାହାଙ୍କୁଟି ଅର୍ଜୁନ ଜ୍ଞାନୀ ବୋଲି କହି ।
ଅନଠାରେ ସେ କଥା ସମ୍ଭବ ନାହିଁ । ୩୪୨ ।
ଯେଉଁ ଲୋକ ଜାଣିମାତ୍ରଟି ହୋଇବ ।
ବସ୍ତୁ ସୁଖ ଦୁଃଖ ବୋଲିଣ ସେନିବ ।

ଇହ ଲୋକେ କାମ କ୍ରୋଧଙ୍କ ଉଦବେଗ ।
ଦେହ ଥିବା ଯାଏଁ ଯେ ସହନ୍ତି ମହାଭାଗ ।
ତାହାଙ୍କୁ ଯୋଗୀ ସୁଖୀ ବୋଲି କହି ।
ଅନଠାରେ ଏ କଥା ସମ୍ଭବଇ ନାହିଁ । ୩୪୩ ।
ଯେ କାମ କ୍ରୋଧ ଦୁଇ କରଥାଏ ଦୂର ।
ସଂଯତ ଚିତ୍ତ ହୋଇଥାଏ ନରବର ।
ଅମୃତତତ୍ତ୍ୱ କଥାକୁ ହୃଦୟେ ଧରଥାଏ ।
ଜୀବନ ମୁକ୍ତ ତାକୁ ବୋଲନ୍ତି ସବେ । ୩୪୪ ।
ଅତମା ଯାହାରନ୍ତି ବଶରେ କେହି ନାହିଁ ।
ତାକୁ ତାଠାରୁ ଶତ୍ରୁ ଜଗତେ କେହି ନାହିଁ ।
ଅପଣା ସୁଖ ଦୁଃଖ ପରାୟେ ପର ଦୁଃଖ ।
ସୁଖ ଯେବେ ଯୋଗୀଙ୍କ ଅଟେ ନିରେଖ । ୩୪୫ ।
ସୁହୃଦ, ମିତ୍ର, ଅରି, ମଧ୍ୟସ୍ଥ, ଦ୍ୱେଷ୍ୟ ବନ୍ଧୁ ।
ପାପୀ, ଉଦାସୀନ, ଅସାଧୁଜନ, ସାଧୁ ।
ଏମାନଙ୍କେ ବୁଦ୍ଧି ଯେ କରଇ ସମଭାବୁ ।
ଯୋଗାରୂଢ଼ ଯୋଗୀ ସମ ନୋହେ ତାକୁ । ୩୪୬ ।
ମନ ଯେଉଁଠାକୁ ବଳାତ୍କାରେ ଯିବ ।
ସେଠାରୁ ଅଣି ତାକୁ ଅତ୍ମାରେ ରଖିବ ।
ମନ ଯେଉଁ କାଳେ ଶାନ୍ତ ହୋଇଯାଏ ।
ସେହି କାଳେ ବ୍ରହ୍ମସୁଖ ଭୋଗ ହୁଏ । ୩୪୭ ।

ଯୋଗିଜନ ମନ ହୋଇଲେ ଅସ୍ଥିର ।
ବ୍ରହ୍ମ ପ୍ରାପ୍ତି ତାର ହୁଅଇ କ୍ଷିପ୍ରତ । ୩୪୮ ।
ଯୋଗୀଲୋକ ମୋ ଆତ୍ମା ସର୍ବ ପ୍ରାଣିଠାରେ ।
ଅଛି ସବୁ ପ୍ରାଣୀ ଅଛନ୍ତି ମୋ ଆତ୍ମାରେ ।
ବୋଲି ସବୁଠାରେଂ ଦେଖଇ ବ୍ରହ୍ମକୁ ।
ଏଥିରେ ତର୍ପ ପାର୍ଥ ଅଛି କହିବାକୁ । ୩୪୯ ।
ଯେଉଁ ଲୋକ ସବୁଠାରେ ମୋତେ (ଶ୍ରୀକୃଷ୍ଣଙ୍କୁ) ଦେଖେ ।
ମୋ ଦେହରେ ସବୁ ଅଛନ୍ତି ଜାଣେ ।
ଯେ ଲୋକଙ୍କୁ ମୁହିଁ ନୁହଇନ୍ତି ଅଦୃଶ୍ୟ ।
ସେ ଲୋକ ମୋର ମଧ୍ୟ ନୁହଇ ଅଦୃଶ୍ୟ । ୩୫୦ ।
ସବୁ ପ୍ରାଣୀ ଆଶ୍ରୟ ମୁଁ ବୋଲି ଯେଉଁ ଯୋଗୀ ।
ମୋତେ ଭଜେ ଜାଣ ସେ ଉତ୍ତମ ବଇରାଗୀ । ୩୫୧ ।
ମନ ବଶ ଯାହାର ହୋଇଛି ଅର୍ଜୁନ ।
ସବୁବେଳେ ଯୋଗ ତାହାର ଅଧୀନ । ୩୫୨ ।
ଭଲ କଥା କରୁ କରୁ ନ ପାରିଲେ ।
ମନରେ ଗଣନା କରିବା ତାଙ୍କୁ ଭଲେ । ୩୫୩ ।
ଯୋଗ ଭ୍ରଷ୍ଟ ଲୋକ ମଲେ ପୁଣ୍ୟ ଲୋକ ।
ଭୋଗ କରେ ପୁଣି ମର୍ତ୍ତ୍ୟରେ ଧନୀ ଲୋକ ।
କୁଳରେ ଜାତ ହୋଇ ଭୋଗକୁ କରଇ ।
କୋଟିଲେ ଯୋଗିକୁଳେ ଜନମ ହୁଅଇ ।

ତ୍ୱଂ ଦେହ ଯୋଗ ବୃଦ୍ଧିଷ୍ଟ ଆହାଙ୍କୁ ।
ତଥାନ୍ତ୍ର ଜ୍ଞାନବନ୍ତ ବହୁ ସର୍ଗଙ୍କୁ ।
ବୃଦ୍ଧି ହେବା ଝଣି ଯୋଗଙ୍କୁ ଯତନ ।
କରଇ ଅହର୍ନିଶି ବସି ହେ ଅର୍ଜୁନ ।
ତ୍ୱଂ ଅଭ୍ୟାସରେ ତ ସ୍ଥିତଇ ଅବଶ୍ୟ ।
ଏଣୁ ଯୋଗେ ମନ ସେ କରଇ ନିଲସ । ୩୫୪ ।
ଜିଜ୍ଞାସୁ, ରୋଗୀ, ଜ୍ଞାନୀ, ଧନାର୍ଥୀ ଏ ଚତୁଷ୍ଟୟ ।
ସୁକୃତ ଥିଲେ ପାର୍ଥ ଭଜନ୍ତି ମୋତେ (ଶ୍ରୀକୃଷ୍ଣ) । ୩୫୫ ।
ଜ୍ଞାନୀର ମୁଁ (ଶ୍ରୀକୃଷ୍ଣ) ପ୍ରିୟ ଜ୍ଞାନୀ ମୋହର ପ୍ରିୟ ।
ଚତୁର୍ଥ ଜାଣିଥାଅ ଦ୍ରୌପଦୀ ଦେବୀ ପ୍ରିୟ ॥ ୩୫୬ ।
ପୁଣ୍ୟ କର୍ମେ ଯାହାର ପାପ ନାଶ ଯାଏ ।
ସେ ଏକା ଭକ୍ତି କରେ ପାର୍ଥ ମୋତେ ପାଏ । ୩୫୭ ।
ଅନ୍ତଃକାଳେ ମୋତେ ସ୍ମରଇ ଯେ ମରେ ।
ଲୀନ ହୋଇଯାଏ ସେ ମୋହର ଦେହରେ ॥
ଏ ବାହାରେ ଅନ୍ତଃକାଳେ ଯେଉଁ ରୂପ ।
ଯେ ସ୍ମରେ ଜାଣ ସେ ଲଭଇ ସେହି ରୂପ । ୩୫୮ ।
ଏ ସକାଶୁ ଅର୍ଜୁନ ପ୍ରତିଦିନେ ।
ସ୍ମରିବ ଅନ୍ତଃକାଳେ ଥିବ ତୁମ୍ଭ ମନେ ।
ତେବେ ଶୁଦ୍ଧି ହେବା ତ ନୋହେ ମୋ ସ୍ମରଣ ।
ତେଣୁ ସ୍ମରିବ ତ ସ୍ୱଧର୍ମ କାରଣ ।

ତାହା ରଖି ଅଗ, ମୋ ପାଖେ ମନ ରଖି ।
ପଛେ, ଦେବ ଭବ ଦୁଃଖକୁ ଉପେକ୍ଷି ।
ଯେଉଁ ଲୋକ ଅହର୍ନିଶିରେ ମୋତେ ଧ୍ୟାନ ।
କରଇ ମୁଁ ତାହାର ହୁଅଇ ଅଧୀନ ! ୩୫୯ ।
ଅନ୍ୟ କରି ମୋତେ ଭଜଇ ଯେଉଁ ଦେହୀ ।
ଅନ୍ତ ଅବେ ତାହାର ଜନମ ନହଇ । ୩୬୦
ବ୍ରହ୍ମ ଲୋକଯାଏ ଯାଇ କର ଲୋକ ।
ଅସୁଅଛୁ ଅନ୍ତ ଅବେ ମର୍ତ୍ତ୍ୟ ଲୋକ ।
ମତେ ଯେଉଁ ଲୋକ ଭକତିରେ ପାଏ ।
ଧର ନ ପାରଇ ସେ ଅନ୍ତ ଅବେ କାହିଁ । ୩୬୧ ।
ଯେତେବେଳେ ପୁଣ୍ୟ ତାଙ୍କର ସରିଯାଏ ।
ମର୍ତ୍ତ୍ୟଲୋକେ ଆସି ଜନମ ପୁଣି ହୋଏ ।
ଯାଗକର୍ମ କରି ପୁଣି ଅନ୍ତ ଅବେ ।
ବସନ୍ତି ସୁଖେ କାମୀ ସ୍ୱର୍ଗରେ ପୁଣରେ ॥
ଏ ରୂପେ କାମୀଙ୍କର ଯିବାର ଅସିବାର ।
ହେଉଛୁ ଅଭଜ୍ଞ ହେ ଅବକୁ ଥର । ୩୬୨ ।
ତତ୍ତ୍ୱରେ ତ ମୋତେ ନ ଜାଣନ୍ତି କେହି ।
ଏଣୁ ପୁଣ୍ୟ ଲୋକୁଁ ପତନ୍ତି ଚ୍ୟୁତ ହୋଇ । ୩୬୩
ପତ୍ର, ପୁଷ୍ପ, ଫଳ, ଜଳ ଯେ ଭକତିରେ ।
ଦଏ ମୁଁ ତାହା ଜାଣ ସେବଇ ପ୍ରୀତିରେ । ୩୬୪

ତପସ୍ୱୀର ଅହାର ହୋମ ତପ ଦାନ ।
ମୋତେ ସମର୍ପଣ କର ହେ ଅର୍ଜୁନ
ଏ ରୂପେ କଲେ ଶୁଭା ଶୁଭରୁ ମୁକ୍ତ ।
ମୁକତ ହେବ ମୁଁ (ଶ୍ରୀକୃଷ୍ଣ) କହୁଛି ସତ୍ୟରୁ । ୩୬୫ ।
ମୋ ଭଜନ କଥାରେ ବନ୍ଧୁ କର ପ୍ରିୟ ।
ମୋର ପାଦ-ପଦ୍ମ ସେବାରେ ମନ ଦଅ ।
ମୋତେ (ଶ୍ରୀକୃଷ୍ଣ) ପୂଜା କର କର ନମସ୍କାର ।
ଯେବେ ମୋତେ ପାଇବା ଇଚ୍ଛା ମନେ କର । ୩୬୬।
ଅଭ୍ୟାସ ପ୍ରଭୃତିଙ୍କ ଜ୍ଞାନ ଅଟେ ଶ୍ରେଷ୍ଠ ।
ଜ୍ଞାନରୁ ଧ୍ୟାନ ଅଟେ ଅଧିକ ବିଜୟ ।
ଧ୍ୟାନ ବଳୁ ପ୍ରଭୃତ କର୍ମଫଳ ତ୍ୟାଗ ।
ବଡ଼ ଅଟଇ ହେ ଜାଣ ମହାଭାଗ । ୩୬୭ ।
କର୍ମ ଫଳ ତ୍ୟାଗ ଯେ ଜନ କରଇ ।
ସଂସାର-ଶାନ୍ତି ଜାଣ ତାରଙ୍କ ହୁଅଇ । ୩୬୮ ।
ସତ୍ତ୍ୱ ଗୁଣ ଲୋକ ଯାଆନ୍ତି ଉପରକୁ ।
ରଜୋଗୁଣ ଲୋକେ ଯାଆନ୍ତି ମଧ୍ୟମକୁ ।
ତମୋ ଗୁଣ ଲୋକ ଯାଆନ୍ତି ନରକ ।
ଜାଣ ଅଟେ ପାଣ୍ଡବ ବୀରଙ୍କ ନାୟକ । ୩୬୯ ।
କାମ କ୍ରୋଧ ଲୋଭ ନରକ ଦୁଆର ।
ଜାଣିମା ଲୋକମାନେ କରନ୍ତି ଅନ୍ତର । ୩୭୦ ।

ଫଳାକାଂକ୍ଷୀ ନୋହୁ ଭାସ୍ତିକ ବାଚକ ।
ମାନସ ତପ୍ତ କଲେ ସାତ୍ତ୍ୱିକ ସେ ଲୋକ । ୩୬୧ ।
ସତ୍କାରମାନ ପୂଜା ଲଭିବାର ପାଇଁ ।
ତପ କଲେ ରାଜସ ତପ ସେ ବୋଲାଇ । ୩୬୨ ।
ମୂର୍ଖ ପଣେ ଦେହ ପୀଡ଼ା ଦେଇ ପର- ।
ଉତ୍ସାଦନକେ ଯେ କରଇ ତପ ଘୋର ।
ତାହାକୁତ ତାମସ ତପ ବୋଲି କହି ।
ଥବେ ଅର୍ଜୁନ ଜାଣ କହୁ ଥାଇଁ । ୩୬୩ ।
ଅନୁପକାରୀ ଲୋକମାନଙ୍କୁ ଯେଉଁ ଦାନ ।
ଯେ ଦେଉଛନ୍ତି ସାତ୍ତ୍ୱିକ ବୋଲି ତାହା ଘେନ ।
ଦେଶ କାଳ ଜାଣି ଯେ ପାତ୍ରରେ ଦାନ ହଏ ।
ସେହୁ ମଧ୍ୟ ଅର୍ଜୁନ ସାତ୍ତ୍ୱିକ ବୋଲାଏ । ୩୬୪ ।
ପ୍ରତ୍ୟୁପକାର ଅର୍ଥେ ବା ଫଳ ଉଦ୍ଦେଶ୍ୟେ ।
ଯେ ଦାନ ଦେଉଅଛନ୍ତି ରାଜସ ତାକୁ ଭାଷେ । ୩୬୫ ।
ଅଦେଶରେ, ଅକାଳେ, ଅପାତ୍ରରେ ଦାନ ।
ଦେଲେ ତାମସଟି ତାହାର ଅଭିଧାନ । ୩୬୬ ।
ସବୁ କର୍ମମାନଙ୍କର ଯେ ଫଳ ତ୍ୟାଗ ।
ତ୍ୟାଗ ବୋଲି ତାହାକୁ ଜାଣ ମହାଭାଗ । ୩୬୭ ।
ସତ୍ତ୍ୱବନ୍ତ ଦୁଃଖକର କରମକୁ ।
କରୁଥାଏ ସୁଖ କରଣ ମନକୁ । ୩୬୮ ।

ସଖା କର କର୍ମରେ ନୁହଇ ଚିତ୍ତ ପ୍ରୀତ ।
ଯେଏଣୁ ତାକୁ ତ୍ୟାଗୀ ବୋଲନ୍ତେ ପାଣ୍ଡୁ ସୁତ ।
ଦେହୀ ଲୋକ କର୍ମ ତ ଛାଡ଼ି ନ ପାରଇ ।
ଯେ କର୍ମ କରେ ଫଳ ଛାଡ଼ି ତ୍ୟାଗୀ ସେହି । ୩୭୯ ।
ଯେଉଁମାନେ କର୍ମ ଫଳକୁ ନ ଛାଡ଼ନ୍ତି ।
ଅନିଷ୍ଟ ଇଷ୍ଟ ମିଶ୍ର ଫଳକୁ ପାଆନ୍ତି । ୩୮୦ ।
ଅଧିଷ୍ଠାନ, କର୍ତ୍ତା, ଦଇବ, କାରଣ ।
ଚେଷ୍ଟା ମିଶି ପାଞ୍ଚ କାରଣ ଏ ଜାଣ ।
କାୟ, ବାକ, ମନରେ ଧର୍ମାଧର୍ମ କର୍ମ ।
କରବା କଥାରେଣ୍ଟଃ ଯେ ପାଞ୍ଚେ ପାର୍ଥ ମର୍ମ । ୩୮୧ ।
ମୁଁ କରନ୍ତ କର୍ମ ବୋଲି ଯେ ବୋଲଇ ।
ତାହା ଠାରୁ ଅଜ୍ଞାନୀ ହୋଇ ଲୋକ ନାହିଁ । ୩୮୨ ।
ଯେଉଁ ଜ୍ଞାନେ ସବୁ ପ୍ରାଣୀ ଆତ୍ମା ଏକ ।
ଭାବନ୍ତି ସେ ଜ୍ଞାନକୁ ବୋଲିବ ସାତ୍ତ୍ୱିକ । ୩୮୩ ।
ଯେଉଁ ଜ୍ଞାନେ ନାନା ଆତ୍ମା ଭାବନା ।
ହୋଏ ରାଜସ ସେ ବୋଲିବ ମହାମନା । ୩୮୪ ।
ଏକ ମୂର୍ତ୍ତି ବା ଦେହେ ଯା ଈଶ୍ୱର ମତ ।
ତାମସ ଜ୍ଞାନୀ ବୋଲି ତାହାକୁ କହନ୍ତି । ୩୮୫ ।
ଫଳ ଇଚ୍ଛା ନ କରି କରଇ ଯେଉଁ କର୍ମ ।
ସାତ୍ତ୍ୱିକଟ ବୋଲିବ ଅର୍ଜୁନ ତାର ନାମ । ୩୮୬ ।

ଫଳକୁ ଇଚ୍ଛା କରି ସାହଙ୍କାର ହୋଇ ।
ଯେଉଁ କର୍ମ କରେ ସେ ରାଜସ ବୋଲାଇ । ୩୮୭ ।
ଅନୁବନ୍ଧ, କ୍ଷୟ, ପୌରୁଷ, ଅହିଂସାକୁ ।
ଅପେକ୍ଷା ନ କରି ଯେ କରେ କରମକୁ ।
ତା କର୍ମକୁ ଅର୍ଜୁନ ବୋଲନ୍ତି ତାମସ ।
ଭୂତ ବଧ ସନ୍ଦେହ ନ କର ଗୁଡ଼ାକେଶ । ୩୮୮ ।
ସବୁ ହୃଦରେତ ଅଛନ୍ତି ଈଶ୍ୱର ।
ଭ୍ରମାଉଛନ୍ତି ଯନ୍ତ୍ରାରୂଢ଼ ପରି ନର ।
ସବୁ ଛାଡ଼ି ଈଶ୍ୱରଠାରେ ଅର୍ଜୁନ ।
ଶରଣ ପଶ ତୁମ୍ଭେ ପାଇବ ଭଲ ସ୍ଥାନ । ୩୮୯ ।
ମୋ (ଶ୍ରୀକୃଷ୍ଣ) ଠାରେ ମନ ଦିଅ ମୋତେ ପୂଜା କର ।
ମୋ ଭକତ ହୋଇ କର ନମସ୍କାର ।
ଏମନ୍ତ ହେଲେ ମୋତେ ପାଇବ ଅହେ ପାର୍ଥ ।
ନ କରିବ ଲୋଡ଼ା ବେଦ ଶାସ୍ତ୍ର ଅର୍ଥ । ୩୯୦ ।
ସବୁ ଧର୍ମ ଛାଡ଼ି ମୋ (ଶ୍ରୀକୃଷ୍ଣ) ପାଦେ ଶରଣ ।
ପଶ ସବୁ ପାପରୁ ତାରିବି ମୁଁ ଅର୍ଜୁନ । ୩୯୧ ।
ସଂପତ୍ତିରେ ମିତ୍ର ଅମିତ୍ର ଲୋକେ ତଥା ।
ବିପତ୍ତି ହେଲେ ସିନା ହୋଏ ସେ କଳନା । ୩୯୨ ।
ବିପତ୍ତିରେ କହିଁ ଅଧୈର୍ଯ୍ୟ ହେଉଛ ।
ଏ ସଂସାର ବନ୍ଧ ତ ଜାଣି ଅଛ ମିଛ । ୩୯୩ ।

ପୁତ୍ର, ମିତ୍ର ଭାର୍ଯ୍ୟା, ଧନରେ ଦେଇ ଚିତ୍ତ ।
ଦେହଚିନ୍ତା ଦେଇ ଥାଇ ଲୋକେ ଦୁଃଖି । ୩୯୪ ।
କାଳକୂଟ କେହୁ ଜାଣି ପାରୁ ନାହିଁ ।
କାଳକୁ ଚାହିଁ ଶୋକ ଦୁଃଖଙ୍କୁ ହୁଅଇ । ୩୯୫ ।
ଶୋକ କଲେ ନାଶ ଯାଏ ତ ବିବେକ ।
ଏହା ଜାଣି ପଣ୍ଡିତେ ଛାଡି ଥାନ୍ତି ଶୋକ । ୩୯୬ ।
ପୂର୍ବେ ଯେଉଁ ଲୋକ କରିଥାଏ ପାପ ।
ସେ ଫଳନ୍ତି ଫଳିବା କାଳେ ସେ ହୋଏ ଲୋପ । ୩୯୭ ।
ବାଲ୍ୟ, ଯଉବନ, ଜରାରେ ତ୍ରିପ୍ରକାର ।
ବୃଦ୍ଧି ହେଉଅଛି ସବୁରି ମନେ କର । ୩୯୮ ।
କାର୍ଯ୍ୟକୁ ଚାହିଁ ତାର ବୁଦ୍ଧି ଯେ ଜନ୍ମଇ ।
କରଇ କାର୍ଯ୍ୟ ତାର ହୁଅଇ ଉଦୟ । ୩୯୯ ।
ସାବଧାନ ନୋହିଲେ ବିଦ୍ୟା କୀର୍ତ୍ତି ତପ ।
ସବୁ ଲୋକଙ୍କର ହୋଇଯାଏ ଲୋପ । ୪୦୦ ।
ମାତା, ପିତା, ପୁତ୍ର ବୋଲି ବୋଲୁଥାନ୍ତି ।
ମଲେ ଅଉ ଥରେ ଅସି ନ ଦେଖନ୍ତି । ୪୦୧ ।
ଦ୍ରବ୍ୟ, ରୂପ, ଯୌବନ ଅରୋଗ୍ୟ ଜୀବନ ।
ଭାର୍ଯ୍ୟା, ପୁତ୍ର, ମିତ୍ର ବୋଲନ୍ତି ଅନିତ୍ୟ । ୪୦୨ ।
ଜ୍ଞାନରେ ମନ ଦୁଃଖ, ଔଷଧେ ବେଦନା ।
ନାଶୁ ଥିବ ସୁବୁଦ୍ଧି ହେବନ୍ତି ଯେ ଜନା (ଧୃତରାଷ୍ଟ୍ର) । ୪୦୩ ।

ପୂର୍ବେ କଲା କର୍ମ ନ ଛାଡ଼ଇ ସଙ୍ଗ ।
ସୁଖ ଦୁଃଖ ଭୋଗ କରୁଥାଏ ଅଙ୍ଗ । ୪୦୪ ।
ଅପଣାର ଅଟେ ପାପ ପୁଣ୍ୟ ସାକ୍ଷୀ ।
ହୁଅଇ ବୋଲି ଜାଣ ଶାସ୍ତ୍ର ଅଛି ଲେଖି । ୪୦୫ ।
ସଂସାର ବର୍ତ୍ତି ଜନେ ଅଜ୍ଞାନୀ ବୁଡ଼ନ୍ତି ।
ପଣ୍ଡିତେ ହରିନାମ-ଭେଳାରେ ତରନ୍ତି । ୪୦୬ ।
କର୍ମ—ପାପ ମୁଖେ ପଡ଼ି ପ୍ରାଣିଜନ ।
ବିଷୟ ବିଷାନଳେ ହୁଅନ୍ତି ଦହନ । ୪୦୭ ।
ରାଜ୍ୟନାଶ, ସୁହୃଦ୍‌ନାଶ, ପୁତ୍ରନାଶ ।
ଅଧର୍ମରୁ ଉତ୍ପେ ହୋଏନ୍ତି ପ୍ରକାଶ । ୪୦୮ ।
ଜ୍ଞାନ ବିଦ୍ୟା, ବଳ, ଅର୍ଥ, ମିତ୍ର, ବନ୍ଧୁଜନ ।
ଯୋଗେ ନୋହେ ନୃପ ଦୁଃଖ ବିମୋଚନ । ୪୦୯ ।
ଦମ, ତ୍ୟାଗ, ଅପ୍ରମାଦ ଅଶ୍ୱ ତିନି ।
ମନୋରଥରେ ଯେ ଯୋଚଇ ବିଜ୍ଞ ।
ଶୀଳ ଦଉଡ଼ିରେ ଧରି ସେହି ଲୋକ ।
ସେ ରଥରେ ବସି ଦେଖଇ ବ୍ରହ୍ମ ଲୋକ । ୪୧୦ ।
ସବୁ ପ୍ରାଣିମାନଙ୍କୁ ଅଭୟ ଯେ ଦେଉଛି ।
ସହସ୍ର ଯାଗ ଫଳ ତା ସଙ୍ଗେ ଗୋଡ଼ାଉଛି । ୪୧୧ ।
ପ୍ରାଣିମାନଙ୍କରେ ହେବାର ଦୟାପର ।
ସର୍ବ ଧର୍ମ ସାର ଅଟଇ ନରବର । ୪୧୨ ।

ରାଜା ହୋଇ ଯେବେ ଦଣ୍ଡ ନ ଧରଇ ।
ସଂପତ୍ତି ଜାଣ ତାର କେବେ ନ ରହଇ ।୪୧୩।
ଧର୍ମ ଅର୍ଥ କାମକୁ ରକ୍ଷିଅଛି ଦଣ୍ଡ ।
ଏ ପ୍ରକାଶୁ ଅନ୍ୟାପ୍ୟ ନୋହେ ଏ ବ୍ରହ୍ମାଣ୍ଡ । ୪୧୪ ।
ରାଜ, ଯମଦଣ୍ଡ ପରଲୋକ ଭୟ ।
ସଭାଙ୍କୁ ପାପ ନ କରନ୍ତି ଜନଚୟ ।
ଲୋକ ରକ୍ଷା ସାବଧାନ ହେବା ପାଇଁ ।
ଦଣ୍ଡ ପ୍ରତିଷ୍ଠିତ ହୋଇଅଛି ମହୀ ।
ବ୍ରହ୍ମଚାରୀ, ଗୃହୀ, ଭିକ୍ଷୁ, ବାନପ୍ରସ୍ଥ ।
ଦଣ୍ଡ ଯୋଗ୍ୟ ରହି ଅଛନ୍ତି ହୋଇ ସୁସ୍ଥ ।
ଭୟ ଉପସ୍ଥିତ ନୋହିଲେ ମନରେ ।
ଧର୍ମ କରି ନ ପାରେ ଲୋକ ଏ ମହୀରେ । ୪୧୫।
ଦଣ୍ଡ ବିନା ଲୋକରେ ହୋଇଥିବ ବଣ ।
କେ ଅଛି ଦେଖିନାହିଁ ଅତଏବ ଦୃଶ । ୪୧୬ ।
ବୁଦ୍ଧି ପ୍ରାସାଦରେ ଚଢ଼ଇ ଯେହୁ ନର ।
ସବୁ ଦେଖୁଥାଏ ସେ ଶୋକ କରେ ଦୂର । ୪୧୭ ।
ପରମ ସୁଖ ସ୍ୱର୍ଗ ସନ୍ତୋଷକୁ କହି ।
ସନ୍ତୋଷରୁ ବଳ ଅନ୍ୟ କଥା ନାହିଁ । ୪୧୮ ।
ଭାର୍ଯ୍ୟା, ପୁତ୍ର, ମିତ୍ର, ବାନ୍ଧବ, ସମ୍ପତ୍ତି ।
ମୋହର ଯେ ନ ବୋଲେ ସେ ପାଏ ଭଲ-ଗତି ।୪୧୯।

ଯାହାର ସହାସରୁ ଉପୁଜିବ ଶୋକ ।
ତାକୁ ଛାଡ଼ିଦେବ ଯେ ହେବ ବିବେକ । ୪୨୦ ।
ମଛଘିବା ଜିହ୍ୱାରୁ ଯାର ଶୁଷ୍କ ବାଣୀ ।
ପ୍ରକୃଷ୍ଟ ନୁଏ ସେହି ନର କୁଳମଣି । ୪୨୧ ।
ବିତ୍ତ ହେଲେ ଦେଲେ ହୁଅଇ ସେ ହିତ ।
ନ ଦେବା ଲୋକଙ୍କୁ ସେ ହୁଅଇ ଅହିତ । ୪୨୨ ।
ଲୁବ୍ଧ ଲୋକେ ଧନ ଜାଣ ରଖିଥାନ୍ତି ।
ଅନ୍ୟାୟରେ ଅପାତ୍ର ଲୋକରେ ଦଅନ୍ତି । ୪୨୩ ।
ଧରମ କରିବାକୁ ଜନମ ତୁମର ।
କରମ ଛାଡ଼ିବାକୁ ନାହିଁ ଅଧିକାର । ୪୨୪ ।
ଅହଂ ବୁଦ୍ଧିହେଲେ ଲୋକ ବୁଡ଼ି ଯାଇ ।
ଦୈହିକ ଧନ ଯାକ ବିନଷ୍ଟ କରଇ ॥
ତହୁଁ କରେ ହରଣ ସେ ପରର ଧନ ।
ରାଜାନ୍ତ ତାର ଦଣ୍ଡ କରନ୍ତି ବିଧାନ । ୪୨୫ ।
କାଳରେ ବଳଖର ଦୁର୍ବଳ ହେଉଛି ।
ଧନାଢ୍ୟ ଲୋକ ମଧ୍ୟ ପରକୁ ମାଗୁଛି । ୪୨୬ ।
ସତ୍ୟ, ଦାନ, ତପସ୍ୟା, ଅହିଂସା, ଅଧ୍ୟୟନ ।
ଅକ୍ରୋଧ ଦେବ ପୂଜା ଧର୍ମର ଲକ୍ଷଣ । ୪୨୭ ।
ଆପଣା ପର ଭୁଲ ପରୀକ୍ଷା କରୁଥିବ ।
ଜନ୍ୟବସ୍ଥାପୁ ହୋଇ ଘଟଣ ନ ରହିବ । ୪୨୮ ।

ଗୀତ ନୃତ୍ୟ ସ୍ତ୍ରୀଙ୍କରେ ଆସକ୍ତ ନୃପତି ।
ହେଲେ ଚିନ୍ତାଶୂନ୍ୟରେ ନାଶ କରେ ଭୂତ । ୪୨୯ ।
ଆପଣା ଧନ ପାଇ ହୋଇବ ନୃପତି ।
ପର ଧନେ ନ ହେବ କଦାଚିତେ ରତ । ୪୩୦ ।
ରଜାର ପ୍ରିୟ ଯେଉଁ ଲୋକଙ୍କ ବାଞ୍ଛଇ ।
ଉଦପର ହୁଇବେ ବାଧା ତାର ନାହିଁ । ୪୩୧ ।
ଯେଉଁ ଲୋକ ରଜାର ଅନିଷ୍ଟ ଚିନ୍ତା କରେ ।
ପଡ଼ଇ ସେ ଯାଇ ଘୋର ନରକରେ । ୪୩୨ ।
ରାଜଦ୍ରବ୍ୟ ପଥରଠାରୁ ଅଟେ ଅସ୍ଥ ।
ଖାଇଲେ ତାହା ଲାଗି ରହେ କଣ୍ଠଚିଠ ।
ଏହା ଜାଣି ଆପଣା ଦ୍ରବ୍ୟରୁ ଅଧିକ ।
କର ମଣୁଥିବ ରଜାର ଦ୍ରବ୍ୟପାକ । ୪୩୩ ।
ଯେବେ କୃପା ଦୃଷ୍ଟିରେ ଚାହେଁ ମହୀପାଳ ।
ତେବେ ମୂଢ଼ ଲୋକ ହୁଅଇ ବାତୁଳ । ୪୩୪ ।
ଯେ ଲୋକଙ୍କୁ ଗୃହ କରିବ ନରସାଇଁ ।
ଛଡ଼ା ଅନ୍ଧ ବଧିର ପରି ସେ ଥିବ ରହି । ୪୩୫ ।
ଲୋଭୀକି ନ ଦେବ ଧନ, ଅପବାସି ଜନ-
ମାନଙ୍କୁ ନ କହିବ ବିଶ୍ୱାସ ବଚନ । ୪୩୬ ।
ମାଳୀ ପୁଷ୍ପ ଲତା ପାଳିବା ପରିସ୍ୟେ ।
ପ୍ରଜାକୁଳ ପାଳିବ ସେ ହୋଇବ ସ୍ୱୟେ ।

ପ୍ରଜା  ପାଳନରେ  ହନନ  ଧର୍ମରେ ।
ଦଣ୍ଡ ଶତ୍ରୁ ବଶେ ବସଇ ସ୍ବର୍ଗରେ ।
ତପସ୍ୟା ଯାଗାଦିରେ ଅର୍ଜିତ ଯେତେ ଲୋକ ।
ପ୍ରଜା ପାଳନରେ ଅଛନ୍ତି ସେତେକ । ୪୩୭ ।
ବ୍ରାହ୍ମଣ ନିତ୍ୟସ୍ବାଧ୍ୟାୟୀ, କ୍ଷତ୍ରିୟ ନିତ୍ୟ ଶସ୍ତ୍ର ।
ହୋଇଲେହିଂ,ତେଣ ପାଳନ୍ତି ଜଗତ । ୪୩୮ ।
ଶତ୍ରୁଠାରେ ସୂର୍ଯ୍ୟ ପରାୟେ ହୋଇବ ।
ସ୍ବଜନେ ଚନ୍ଦ୍ର ପରି ଗୁଣ ପ୍ରକାଶିବ । ୪୩୯ ।
ଅତିମୃଦୁ, କୃପାଳୁ, ଧାର୍ମିକ ଯେତେବେ ହେବ ।
ଲୋକଙ୍କେ ତେବେ ତୁମ୍ଭେ କ୍ଲୀବ ବୋଲାଇବ । ୪୪୦ ।
ଯା ଆଶ୍ରୟେ ସୁଖୀ ପଣ୍ଡିତ ସଜ୍ଜନ ।
ନୃପନ୍ତି ସେ ତହୁଁ ଧର୍ମ୍ମ ବଡ଼ ଜାଣ । ୪୪୧ ।
ଏକ ଉଦ୍ଦେଶ୍ୟରେ କାର୍ଯ୍ୟ କରନ୍ତି ଯେ ଦୁଇ ।
ସ୍ବାର୍ଥ ମନ୍ତ୍ରୀ ବା ମିତ୍ର ତାହାଙ୍କୁ କହି । ୪୪୨ ।
ଧାର୍ମିକ,  ଅପକ୍ଷପାତୀ,  ନ୍ୟାୟପରାୟଣ ।
ବେତନ ଭୋଗୀ ହୋଇ ଯେ ନିଷ୍କପଟ ଜାଣ ।
ରାଜାର ପଞ୍ଚମ ମିତ୍ର ବୋଲାଏ ସେ ରାଜ୍ୟେ ।
ତା ଦେଇ ବନ୍ଧୁ ମଙ୍ଗଳ ରାଜାରଙ୍କ ହୁଏ । ୪୪୩ ।
ବ୍ୟକ୍ତି ବିଶେଷର ପ୍ରତି ସାବଧାନ ହୋଇ ।
ବିଶ୍ୱାସ ବା ଅବିଶ୍ୱାସ କରିବା ଯୋଗାଇ । ୪୪୪ ।

ଏତ ଶୌର୍ଯ୍ୟେ ହୁଇ ଜନ ଅଧିକାରୀ ହେଲେ ।
କାର୍ଯ୍ୟନ୍ତ ନାଶ ଯାଏ ବିରୋଧ ଘଟିଲେ । ୪୪୫ ।
ପ୍ରାଣିମାନେ ଧର୍ମରେ ବନ୍ଧିଛନ୍ତି ଜାଣ ।
ଧର୍ମ ସ୍ୱରୂପୀଙ୍କ ଅଟନ୍ତି ନାରାୟଣ । ୪୪୬ ।
ମରଣ ଘଟିଲେହେଁ ଯେ ମିଛ ନ କହେ ।
ଦୁସ୍ତର ଭବସିନ୍ଧୁ ହେଲେ ସେ ପାରି ହୁଏ । ୪୪୭ ।
ପର ବୋଲେ ଲୋକଙ୍କୁ କରଇ ଯେ ନାଶ ।
ତା ବେଳରେ ନିକଟେ ଲାଗଇ କାଳ ପାଶ । ୪୪୮ ।
ମୂର୍ଖ ଲୋକ ପ୍ରଶଂସା ନିନ୍ଦାକୁ ପଣ୍ଡିତ ।
ନ ବିଚାର ସନ୍ତୁ ଥିବନ୍ତି ନିରତ ॥
ବନ ମଧ୍ୟେ କାଠ ତାଡ ଦେଖାପରି ।
ସୂକ୍ଷ୍ମ ନିନ୍ଦା ବଚନ ଅଟଇ ତାହାର । ୪୪୯ ।
ଅଟେ ବନ୍ଧ ପକ୍ଷେ ନିନ୍ଦା ଯେ କରଇ ।
କୁକ୍କୁର ପରି ଜାଣ ବୁଦ୍ଧି ତା ଅଟଇ । ୪୫୦ ।
ବୃଦ୍ଧି ପ୍ରକାଶରୁ ହାନି, ଲାଭ, ଜନ୍ମ ।
ହେଉଛି ହେ ଜାଣ ଧର୍ମଙ୍କ ତନୟ । ୪୫୧ ।
ବିଦ୍ୟା, ତପ, ଧନ ବ୍ୟବସାୟୀ ଜନା ।
କେବେ ନୁହଇ ହେ ଜାଣ ମହାମନା । ୪୫୨ ।
ଯେଉଁ କର୍ମ କଲେ ହୋଇବେ ଲୋକ ତୋଷ ।
ସେହି କର୍ମ କରୁଥିବ ନରଈଶ । ୪୫୩ ।

ସବୁ ଲୋକମାନେ ଆଶା ସକାଶରୁ ।
ମରୁଛନ୍ତି ତହୁଁରେ ନୋହୁ ଏଣୁ ଧୀରୁ ।
ଆକାଶଠୁ ପ୍ରତି ଆଶା ଅଟେ ବଡ଼ ।
ମୋ ମତରେ ଏଥିରେ କିଛୁ ନାହିଁ ଦୃଢ଼ । ୪୫୪ ।
ରାଜାଙ୍କୁ ପ୍ରଜା, ପ୍ରଜାମାନଙ୍କୁ ରାଜନ ।
ଅନ୍ୟୋନ୍ୟରେ ରକ୍ଷା କରିବେ ପ୍ରତିଦିନ । ୪୫୫ ।
ଅଧନ ହେଲେ ରଜା ଦୁର୍ବଳ ବୋଲାଏ ।
ଧନ ହେଲେ ବଳଥିବ ହୋଏ ରାଜ୍ୟେ । ୪୫୬ ।
ବିପତ୍ତି ଯେଉଁ କାଳେ ପଡ଼ିବ ଲୋକଙ୍କୁ ।
ନ କରିବ ଆଦର କରିବ ଅମିତ୍ରଙ୍କୁ ।
ଅମିତ୍ରଭୂଲେ ପ୍ରୀତି ନ କଲେ ବିପତ୍ତିରେ ।
ରହି ନ ପାରେ ସେ ଜାଣ ସମ୍ପତ୍ତିରେ । ୪୫୭ ।
ଶଗଡ଼ ପରେ ନାବ, ନାବରେ ଶଗଡ଼ ।
ଯାଉ ଅଛୁ ଯେଣୁ ଅଟଇ କାଳ ବଡ଼ । ୪୫୮ ।
ବିଶ୍ୱାସରେ ଅତି ବିଶ୍ୱାସ ନ କରିବ ।
କରିବ ଯେବେ ସମୂଳ ହୋଇ ନାଶ ଯିବ । ୪୫୯ ।
ବଳଥିବ ଲୋକ ପାଶରୁ ଦୁର୍ବଳ ।
ଗଲେ ତାହାର ସେ ହୁଅଇ କବଳ । ୪୬୦ ।
ସବୁଠାରେ ଅବିଶ୍ୱାସ କରିବାର ।
ଅଟଇ ଜାଣିବାର ଲୋକର ବଶୃର୍ଷ । ୪୬୧ ।

ଅବଶ୍ୟ କଲେ ଦୁର୍ବଳଙ୍କୁ ବଳୀ ।
ବାଧି ନ ପାରଇ ହେ ତାର ବଳ ବଳ । ୪୬୨ ।
ବହୁତର ଲୋକ ବିଶ୍ୱାସକୁ କଲେ ।
ଦୁର୍ବଳ ଲୋକଠାରୁ ମରଣ ଲଭେ ଭଲେ । ୪୬୩ ।
ଧନ ହରଣରୁ ପୁତ୍ର ଭ୍ରାତା ସଖା ।
ଶତ୍ରୁ ମଧ୍ୟେ ଜାଣ ହୋଇଥାନ୍ତି ଲେଖା । ୪୬୪ ।
ବିଦ୍ୟା, ଶୌଚ, ଦାକ୍ଷ୍ୟ, ବଳ, ଧୀରପଣ ।
ପଣ୍ଡିତ ଜନଙ୍କର ଏ ପାଞ୍ଚୋଟି ଗୁଣ । ୪୬୫ ।
ଜାଣିବା ଲୋକ ସବୁଠାରେ ଶୋଭା ପ୍ରାଏ ।
ପଡ଼ିଲେ ବସ୍ତୁ ନିର୍ଦ୍ଦିଷ୍ଟରେ ଫଳ ନାଏ । ୪୬୬ ।
ବୁଦ୍ଧିମନ୍ତ ଲୋକର ହେଲେ ଅଳ୍ପ ଧନ ।
ବୃଦ୍ଧିରେ ସେ ଦ୍ୱିଗୁଣ ହୁଅଇ ସୁଜନ । ୪୬୭ ।
ଗୃହ ସ୍ନେହ ବନ୍ଧନରେ ବଦ୍ଧ ହେଲେ ନର ।
ଜାଣ ତାଙ୍କୁ ସ୍ତ୍ରୀଏ ଯା କରନ୍ତି ଅଧୀର । ୪୬୮ ।
ଦରିଦ୍ରଙ୍କୁ ଯେଉଁ ରଜା ଦିଏ ଅନ୍ନ ।
ତା ସମାନ କେବେ ନ ଥିବନ୍ତି ଜନ । ୪୬୯ ।
ପିତା, ମାତା, ଗୁରୁ, ଗୋପତା, ବହ୍ନି, ଯମ ।
କୁବେର, ବୋଲନ୍ତି ନରଙ୍କ ଉତ୍ତମ । ୪୭୦ ।
ପ୍ରଜାଠାରେ ଦୟା କରିବାରୁ ପିତା ।
ଦାନରେ ଅନୁଗ୍ରହ କଲେ ହୋଏ ମାତା ।

ଅନ୍ଷ୍ଟ କଥାଯାକ କଲେ ରଜା ନାଶ ।
ଅଗ୍ନି ବୋଲାଏ ତେଜ ଜାଣ ନରେଶ ।
ସବୁ ପ୍ରାଣୀମାନଙ୍କ ଧର୍ମ ପ୍ରବର୍ତ୍ତଇ ।
ରକ୍ଷିବାରୁ ଯମ ବୋଲାଏ ନରସାଇଁ ।
ଆପଣା ବସ୍ତୁଦ୍ରବ୍ୟ କରିବାରୁ ଦାନ ।
କୁବେର ବୋଲାଏଟି ନରପତି ଜାଣ ।
ଧର୍ମ ଉପଦେଶ ଦେବାରୁ ହୋଏ ଗୁରୁ ।
ଗୋପ୍ତା ବୋଲାଏ ସେ ପାଳନା କରିବାରୁ । ୪୭୧ ।
ବକ ପରି କାର୍ଯ୍ୟ ଚିନ୍ତା କରୁଥିବ ।
ସିଂହ ପରି ପରାକ୍ରମବନ୍ତ ହେବ । ୪୭୨ ।
ଋଣଶେଷ, ଶତ୍ରୁଶେଷ, ଅଗ୍ନିଶେଷ ।
ଥିଲେ ବଢ଼ି କରି କରନ୍ତି ନାଶ । ୪୭୩ ।
ବିଶ୍ୱାମିତ୍ର ବୋଇଲେ ପ୍ରାଣରୁ ବଡ଼ ହୋଇ ।
ଜଗତରେ ଥିଲା ପରି ମୋତେ ଦିଶୁ ନାହିଁ ।
କୁକୁର ମାଂସରେ ରହିବ ଯେବେ ଜୀବ ।
ତା ଛାଡ଼ି କେଉଁ କଥା ଲୋଡ଼ କରିଯିବ । ୪୭୪ ।
ଗୃହିଣୀ ବିନା ଗୃହମାନଙ୍କର ଘର ।
ବନ ଅଟଇନ୍ତି ଗୃହିଣୀ ବିନା ଘର ।
ଧର୍ମ ଅର୍ଥ କାମରେ ଭାର୍ଯ୍ୟା ସହାୟ ।
ନୋହିଲେ ପୁରୁଷର ନୋହେ ସେ ଉଦୟ ।

ରୋଗ ହେଲେ ଭାରତ ଅଟଇ ଔଷଧ ।
ବୋଲି ଜନ୍ମଞ୍ଜୟ କହିଣ ବିବୁଧ ।
ଭାରତ ସମ ବନ୍ଧୁ, ଭାରତ ସମ ଗତି ।
ଭାରତ ସମ ଧନ ନାହିଁ ହେ ଜଗତି ।୪୭୫ ।
ଯାଗ, ଦାନ, ଦୟା, ବେଦ, ସତ୍ୟ, ତପ ।
ଏ ଛଅ କରନ୍ତି ପାତକକୁ ଲୋପ । । ୪୭୬ ।
ପୁଣ୍ୟ-ସୂର୍ଯ୍ୟ ସକାଶୁ ପାପ-ଅନ୍ଧକାର ।
ରହି ନ ପାରଇ କେବେହଁ ମନେ କର । ୪୭୭ ।
ଅଜ୍ଞାନରୁ ଲୋଭ, ଲୋଭରୁ ଅଜ୍ଞାନ ।
ହୁଅଇ ବୋଲି ତାହା ଘଡ଼ନ୍ତି ବିଜ୍ଞଜନ । ୪୭୮ ।
ଲୋଭୁ ହୋଇଲେ ହେ ରାଗ, ଦ୍ୱେଷ, ମୋହ ।
ଶୋକ, ଅପମାନ ଏ ଅଜ୍ଞାନର ଦେହ । ୪୭୯ ।
ସମତା, ସତ୍ୟ, ଦମ, କ୍ଷମା, ଅମାତ୍ସର୍ଯ୍ୟ ।
ତିତିକ୍ଷା, ତ୍ୟାଗ, ଧ୍ୟାନ, ଆର୍ଯ୍ୟଭାବ, ଧୈର୍ଯ୍ୟ ।
ଅନସୂୟା, ଲଜ୍ଜା, ଅହିଂସା, ମିଶି ତେର ।
ଅଟନ୍ତି ଜାଣ ଏ ସତ୍ୟର ଆକାର । ୪୮୦ ।
ଶତ୍ରୁ ମିତ୍ରଠାରେ ବୁଦ୍ଧିଟି ସମାନ ।
ବହେ ସମତା ସେ ବୋଲାଏ ସୁଜନ । ୪୮୧ ।
ଯେବେ ପାପ ଅଭ୍ୟାସ ଲୋକ ଛାଡ଼ଏ ।
ତେବେ ତାହା ଗୁଣରେ ଅଜ୍ଞାନ ନାଶ ଯାଏ । ୪୮୨ ।

ବିଦୁର ବୋଇଲେ ହେ ସତ୍ୟ, ଶମ, ତ୍ୟାଗ ।
ଶ୍ରଦ୍ଧା, କ୍ଷମା, ସ୍ଥିର ବିଶୁଦ୍ଧ ଦୟା ଯାଗ
ସଂଯମକୁ ମିଶି ଏ ଧର୍ମର ସଂଯନ୍ତ୍ରୁ ।
ବଢ଼ାଥନ୍ତି ଜାଣ ହେ ପାଣ୍ଡବ ସନ୍ତ୍ରଢ । ୪୮୩ ।
ସବୁ କାଳେ ବୃତଙ୍କ ମିତ୍ର ଡାମୀ ହେବ ।
ଯେବେ ଭଲ ବୋଲାଇବା ବୁଝିଥିବ । ୪୮୪ ।
ତୁମ୍ଭେ ଅମ୍ଭେ ଯେଉଁଠାରୁ ଆସି ଥାଉଁ ।
ସେହିଠାକୁ ଯିବା ସନ୍ଦେହ ଏଥି ନାହିଁ ।
ନଦୀ ପ୍ରବାହରେ ଏକଠା କାଠ ଖୁଣ୍ଟା ।
ହୋଇ କ୍ଷଣ କରେ ହୁଅଇ ପୁଣି ଫିଟା ।
ସେହି ରୂପେ ପୁତ୍ର ଭାର୍ଯ୍ୟା ସଂଗମ ।
କ୍ଷଣକେ ବ୍ୟର୍ଥ ହୋଇଯାଏ ହେ ନରୋତ୍ତମ । ୪୮୫ ।
ଜୀବ ଯେଉଁ ଦେହରେ କରମ କରଇ ।
ପୁଣି ସେହି ଦେହରେ ତା ଫଳ ଭୁଞ୍ଜଇ । ୪୮୬ ।
ସୂକ୍ଷ୍ମ ଦେହ ହୁଅଇ ଜୀବନ କାରଣ ।
ସ୍ଥୂଳ ଦେହ ଧରଣ ଜନ୍ମନ୍ତି ଜୀବଗଣ ।
ବେଳ ଦେହ ସଂସାରେ ବିବିଧ ରୂପରେ ।
ଇହୁ ନାଶ ପାଆନ୍ତି ଏକ ସମୟରେ । ୪୮୭ ।
ସ୍ନେହ ପାଶ ବନ୍ଧନ ବାଲି ବନ୍ଧ ପ୍ରାୟେ ।
କାଳ-ସ୍ରୋତ ମୁଖରେ କ୍ଷଣକେ ଭାସି ଯାଏ । ୪୮୮ ।

ସ୍ତ୍ରୀ, ପୁତ୍ର, ଭୃତ୍ୟଂ ଅସକ୍ତିରୁ ନଭେ ।
ନିମଜ୍ଜିତ ହୁଅଁନ୍ତି ଘୋର ସାଗରରେ । ୪୮୯ ।
ସବୁ ତପ ପ୍ରଧାନ ଅନଶନ ତପ ।
ଯେ କରୁଛୁ ଅଛ ସେ ଅଟଇ ନିଷ୍ପାପ । ୪୯୦ ।
ସତ୍ୟରୁ ନାହିଁ ତପ, ବିଦ୍ୟାରୁ ଲୋଚନ ।
ନାହିଁ ଜନ୍ତୁ ଦୁଃଖ ରାଗର ସମାନ । ୪୯୧ ।
ନିର୍ଧନ ହୋଇବାର ଅଟଇ ମହାସୁଖ ।
ଧନ ଥିଲେ ଅବଶ୍ୟ ପଡ଼ୁଥାଏ ଦୁଃଖ । ୪୯୨ ।
ଧନ ତ୍ୟାଗୀ ଲୋକର ଅଗ୍ନି ଚୋର ଭୟ ।
ହେବାର ଅଛି ଜାଣି ନ ପାରେ ହୃଦୟ । ୪୯୩ ।
ତ୍ୟାଗହିଁ ଶ୍ରେଷ୍ଠ ସୁଖ ସଂସାର ମଧ୍ୟରେ ।
ତ୍ୟାଗରେ ଲୋକାତୀତ ଧନ ମିଳି ପାରେ । ୪୯୪ ।
ମିଥିଳା ପୋଡ଼ିଯିବା ବେଳରେ ଜନକ ।
କାମ ଶତ୍ରୁ ବୋଇଲେ ନାହିଁ ମୋ ଏଥି ଦକ । ୪୯୫ ।
ଆଶା ବଡ଼ କଷ୍ଟ ନିରାଶା ବଡ଼ ସୁଖ ।
ପିଙ୍ଗଳା ଆଶା ଛାଡ଼ି ପାଇଲା ମହାସୁଖ । ୪୯୬ ।
ପଟେ ସଙ୍ଘା ବହୁ ଭୂମାସ୍ତ୍ରୀ ଧାନ ଭୂଷି ।
ସ୍ୱଇଚ୍ଛାରେ ମହା ସୁଖକୁ କଲେ ଲୁଟି । ୪୯୭ ।
ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର, ଆକାଶ, ଉଦଧି ।
ପର୍ବତ, ଅଗ୍ନି, ନଦୀ, ପଶୁ, ସ୍ୱର୍ଗ, ଶିବ ।

ସମୁଦ୍ର, ବସ୍ତ୍ର, ମହୀ ପାଦ, ଦଶ ଭୁଜ ।
ଗନ୍ଧବହ ନିଶ୍ୱାସ, ହୁତାଶନଂ ତେଜ ।
ଅଟନ୍ତି ସେ ଜାଣ ହେ ଅଚିନ୍ତ୍ୟ ଅବ୍ୟକ୍ତ ।
ସର୍ବ ବ୍ୟାପୀ ଅନନ୍ତ ସର୍ବ ଭୂତାତ୍ମସ୍ଥ । ୪୯୮ ।
ଦେଖୁଛ ତ ଅଗ୍ନି ଲଗିଲା କାଠ ପୋଡ଼ି ।
ଅନ୍ୟ କାଠ ଭିତରେ ରହଇ ଯାଇ ବୁଡ଼ି ।
ସେ ରୂପରେ ଏ ଜୀବ ଛାଡ଼ି ଏ ଦେହକୁ ।
ବରଇ ଯାଇ ଅନ୍ୟା ଅନ୍ୟ ଶରୀରକୁ । ୪୯୯ ।
ଦେହରେ ଯେଉଁ ଅଗ୍ନି ଧରିଅଛି ପ୍ରାଣ ।
ଜୀବ ବୋଲି କହ ତାହାକୁଟି ଜାଣ ।
ସେ ଅଗ୍ନି ଯେତେବେଳେ ଉଭଇ ବିନାଶ ।
ତେତେବେଳେ ଜାଣ ଶରୀର ହୁଏ ନାଶ । ୫୦୦ ।
ଜୀବକୁ ପ୍ରଭୁ ମନ ଅଟଇ ପ୍ରଧାନ ।
ଯହିଁ ଥାଏ ମନ ତହିଁର ହୋଏ ଜ୍ଞାନ । ୫୦୧ ।
ମିଥ୍ୟା ଅଜ୍ଞାନର ସ୍ୱରୂପ ଅଟଇ ।
ଅଜ୍ଞାନ ସକାଶରୁ ନରକ ହୁଅଇ । ୫୦୨ ।
ଚାରି ଆଶ୍ରମରେ ଗୃହସ୍ଥ ଶ୍ରମ ମୂଳ ।
ଆଉ ତିନ ଆଶ୍ରମ ଗଣ୍ଡି, ଡାଳ, ଫଳ । ୫୦୩ ।
ଏକା ହୋଇ ଧର୍ମ କରୁଥିଲେ ନର ।
ପ୍ରାନ୍ତେ ଧର୍ମ ସାଧୁଛି ହୁଅଇ ମନେ କର । ୫୦୪ ।

ଶରୀର ନାଶ ଗଲେ ଆତ୍ମା ନୋହେ ନାଶ ।
ହୋଏ ସେ ଅମାବାସ୍ୟା ଶଶୀର ସଦୃଶ ।
ଅମାବାସ୍ୟା ବାହାରେ ପ୍ରକାଶ ଚନ୍ଦ୍ର ପରି ।
ଆତ୍ମା ପ୍ରକାଶନ୍ତି ହୁଅଇ ରୂପ ଧରି । ୧୦୫ ।
ଅଜ୍ଞାନରୁ ବିଷୟ ପ୍ରବୃତ୍ତି ଲୋକ ହୋଏ ।
ଆତ୍ମାକୁ ଦେଖିବାର ବହୁତ କଷ୍ଟ ହୋଏ ।
ବିଷୟକୁ ଜୀବ ଛାଡ଼ିଲେ ପରମାତ୍ମା ।
ହୁଅନ୍ତି ଜାଣ ହେ ଜୀବମହାତ୍ମା । ୧୦୬ ।
ପାପ ସକାଶରୁ ବିଷୟ ନିବୃତ୍ତି ।
କରି ନ ପାରଇ ଭକ୍ତ ନର ମୂର୍ତ୍ତି ।
ପାପ ନାଶ ଗଲେ ତୃଷ୍ଣା ନାଶ ଯାଏ ।
ଆତ୍ମାକୁ ଭଜନ୍ତି ସର୍ବେ ଭାବ ହୋଏ ।
ପାପ କର୍ମ କ୍ଷୀଣ ହୋଇ ହେଲେ ଜ୍ଞାନ ।
କରନ୍ତି ଲୋକ ଆତ୍ମାକୁ ଦରଶନ । ୧୦୭ ।
ବିଷୟରୁ ଇନ୍ଦ୍ରିୟ ନିବର୍ତ୍ତଇ ଯେବେ ।
ଜାଣ ଲୋକ ମହାସୁଖ ପାଏ ତେବେ । ୧୦୮ ।
ମନ ଯେବେ ବୃତ୍ତି ରହିତ ହୁଅଇ ।
ବ୍ରହ୍ମକୁ ଯାଇ ଜାଣ ଅବଶ୍ୟ ଲଭଇ । ୧୦୯ ।
ଜୀବନ, ରୂପ, ଧନ, ଆରୋଗ୍ୟ, ପ୍ରିୟ ବାସ ।
ଏଥିରେ କଦାଚନେ ନୋହିବ ଲାଳସ । ୧୧୦ ।

ଦେଶ ଯାବନ୍ତୁ ଯେବେ ପଡ଼ଇ ବିପତ୍ତି ।
ଜଣେ ନ ଭାବଇ ଦେବାକୁ ତାହା ଶାନ୍ତି । ୭୧୧ ।
ପୃଷ୍ଠରେ ମଣି, ମୁକ୍ତା, ସୁନା, ସ୍ୱଳ୍ପ ପଦ୍ମ ।
ଆତ୍ମା ରହି ଅଛନ୍ତି ସବୁରି ଦେହେ ପୂର । ୭୧୨ ।
ତାଲ ସ୍ୱରୂପଟି ଅଟନ୍ତି ଭଗବାନ ।
ଡାଳର ଆଦ, ଅନ୍ତ, ମଧ ନାହିଁ ଜାଣ ॥
ପରଂବ୍ରହ୍ମ, ପରମଧାମ ବୋଲି କହ ।
ବିଷ୍ଣୁଙ୍କୁ ଜାଣ ଅଟେ ନର ସାଇଁ ॥
ସୁକୃତମାନଙ୍କର ଗତି ନାରାୟଣ ।
ଦେଖିଲେ ତାଙ୍କୁ ମୋକ୍ଷ ହୁଅନ୍ତି ସେ ଜାଣ ।
ନାରାୟଣ ସର୍ବ ରୂପୀଟି ଅଟନ୍ତି ।
ଈଶ୍ୱର ବୋଲି କହ ତାହାଙ୍କୁ କହନ୍ତି ।
ନବଦ୍ୱାର ପୁରରେ ପୁରୁଷ ଶୋଇବାରୁ ।
ବୋଲନ୍ତି ପୁରୁଷ ପ୍ରଦ୍ୟୁମନ ଗୁରୁ ।
ସବୁ ପ୍ରାଣିଠାରେ ଜ୍ଞାନରୂ ପ୍ରକାଶ ।
କରୁଛନ୍ତି ହୃଦରେ ରହି ଯଦୁ ଈଶ । ୭୧୩ ।
ଅଲସ୍ୟ କର ନିତ୍ୟ ନୈମିତ୍ତିକ କର୍ମ ।
ଯେ ଛାଡ଼ୁଛି ତାହାର ହେଉଛି ଅଧର୍ମ । ୭୧୪ ।
ଦ୍ରବ୍ୟ ତ୍ୟାଗ କଲେ ଯାଗ ସିଦ୍ଧ ହୁଏ ।
ଭୋଗ ତ୍ୟାଗ କଲେ ବ୍ରତ ସିଦ୍ଧି ପାଏ ॥

ସୁଖ ତ୍ୟାଗେ ତପ ଯୋଗକୁ ଲଭଇ ।
ସର୍ବ ତ୍ୟାଗ କଲେ ସଂସାର ତରଇ । ୫୧୫ ।
ଲକ୍ଷ୍ମୀ ବୋଇଲେ ହେ ସତ୍ୟ ଦାନ ଧର୍ମ ।
ତପ, ବ୍ରତ, ନିଷ୍ଠା, ଋତ ପ୍ରକ୍ରମ ॥
ଯାହାଠାରେ ଥାଏ ତା କାର୍ଯ୍ୟେ ମୁଁ ଥାଏ ।
ଅନ୍ୟାୟ ଆଚରଣ କରିବା ଛଡ଼ି ଯାଏ । ୫୧୬ ।
ଅପଣା ସାମର୍ଥ୍ୟକୁ ଗୃହୀ ଦେଉଥିବ ।
ଯେ ମିଳିବ ତା ଖାଇ ଉଦର ପୋଷିବ । ୫୧୭ ।
ପ୍ରାଣିଙ୍କ ହିତଲାଗି ଯେ ଦିଏ ଜୀବନ ।
ସାତ୍ତ୍ୱିକ କର୍ମ ଗୁଣେ ଅଟେ ସେ ବ୍ରାହ୍ମଣ । ୫୧୮ ।
ବ୍ରହ୍ମଲୋକ ଯିବାକୁ ଯୋଗ ରଥ ଅଛି ।
ତା ବସିବା ସ୍ଥାନ ଧର୍ମଟି ହୋଇଛି ।
ଲଜ୍ଜା ସେ ରଥଟିର ଅଟଇ ରକ୍ଷାକର ।
ଉପାୟ ତ୍ୟାଗଟି ଅଟଇ ଯୁଗନ୍ଧର ।
ଅପାନ ଅକ୍ଷ, ପ୍ରାଣ ଯୁଗ ପ୍ରାଜ୍ଞଯୋତା ।
ଚେତନାଟି ସାରଥି, ସ୍ଥାନ ନେଇ ବେଷ୍ଟି ।
ଇନ୍ଦ୍ରିୟ ସଂଯମଟି ତା ନେମି ଅଟଇ ।
ପ୍ରାଣ ଚକ୍ଷୁ ଶ୍ରବଣ ଚର୍ମ ଘୋଡ଼ା ବହୁ ।
ଥାଅନ୍ତି ଜ୍ଞାନ ସାରଥିର ବଳେ ।
ଜୀବକୁ ବହୁ ବ୍ରହ୍ମଲୋକକୁ ବୋଲି ଚଳେ ।

ଏ ରୂପେ ଯୋଗରଥ ଚଢିବାପାଇଁ ଯୋଗୀ ।
ଏ ସଂସାର କଥାରେ ହୁଅନ୍ତି ବୀତରାଗୀ ।
ଯୋଗରଥ ଚଢିବା ଇଚ୍ଛା ଯେବେ ଥିବ ।
ଇନ୍ଦ୍ରିୟଙ୍କ ନିଗ୍ରହ ଧାରଣା ଧରିବ । ୫୧୯ ।
ମନ-ଦୀପରେହିଁ ବ୍ରହ୍ମାଙ୍କୁ ହୋଏ ଦେଖି ।
କଦାଚିତେ ଦେଖି ନ ପାରଇ ଆଖି । ୫୨୦ ।
ଜଙ୍ଗମ ସ୍ଥାବରାଦି ଦେହରେ ପରମାତ୍ମା ।
ବ୍ୟାପି ରହିଛନ୍ତି ଜାଣ ହେ ମହାତ୍ମ ।
ସବୁ ପ୍ରାଣୀ ଶରୀରେ ଦେଖଇ ଯେ ବ୍ରହ୍ମଙ୍କୁ ।
ବ୍ରହ୍ମଙ୍କୁ ପାଇବାକୁ ନିଃସନ୍ଦେହ ତାକୁ । ୫୨୧ ।
ବ୍ରହ୍ମଙ୍କୁ ଦୃଷ୍ଟସ୍ଥୂଳ ନାହିଁ ଏ ସଂସାରେ ।
ହସ୍ତ, ପାଦ, ଚକ୍ଷୁ ତାଙ୍କର ସବୁଠାରେ । ୫୨୨ ।
ଯେଉଁ ଲୋକ ପରମ ବ୍ରହ୍ମଙ୍କୁ ପାଅଇ ।
ଜନ୍ମ ମୃତ୍ୟୁ ଦୁଇ ତାହାର ନୁହଇ । ୫୨୩ ।
ସୁନା ମାଟିଙ୍କରେ ଧରିବ ସମବୁଦ୍ଧି ।
କସା ପିତା ଖାଇ ରହିବ ତପୋନିଧି । ୫୨୪ ।
ଋତ୍ୱିକ, ପୁରୋହିତ, ଆଚାର୍ଯ୍ୟ, ମାତୁଳ ।
ଅତିଥି, ବୃଦ୍ଧାତୁର, ଚିକିତ୍ସକ, ବାଳ ।
ସମ୍ବନ୍ଧୀ, ଜ୍ଞାତି, ବନ୍ଧୁ, ମାତା, ପିତା, ଭ୍ରାତା ।
ଦୁହିତା, ପୁତ୍ର, ଦାସ, ଆପଣା ବନିତା ।

ଭୁଲରେଣ୍ଟ ଜାଣିବା ଜନ ଯେ ହୋଇବ ।
କଦାଚରେ ବିବାଦ କଥା ନ କହିବ । ୫୨୫ ।
(ଶିଷ୍ୟ) ବୋଇଲେ ଭୁମାଗିଙ୍କ ଅଟଇ ହିଂସାବିଧି ।
ଲେଖିନାହିଁ ଏହା ମୋକ୍ଷ ଶାସ୍ତ୍ରେ ବିଧି ।
କାମନା କରି ପଶୁ ମାରଇ ସ୍ୱେଚ୍ଛାଁ ନର ।
ଅଳପ ସୁଖ ପାଇ ନରକେ ପଡେ ଘର ।
ଯାଗରେ ବେଦ ମୋଣ୍ଡି ମାଉଁସ ହାଡ଼ ହୁଇ ।
ଜଗଡ଼ାନ୍ତ ଗାଇର ଦ୍ୱିଜେ ଯା ବାଇ ହୋଇ ।
ଏଥିରୁ ଅଧରମ ହୋଇ କହି କଥା ।
ମନ୍ତ୍ରରେ ଥିବ ବୋଲି ଲେଖି ନାହିଁ ପୋଥା ।
ସୁରା, ମାଛ, ମନ୍ଥ, ଖେରଡ଼ି, ମାଉଁସ ।
ଦୁଷ୍ଟ ଲୋକ ସବାଶୁଁ ହୋଇଛି ପ୍ରକାଶ ।
କାମ, ମୋହ, ଲୋଭ ଥିବା ଲୋକଙ୍କର ।
ଅଟଇ ମନଚ୍ଛିନ୍ନେ ଏମାନେ ଅହାର । ୫୨୬ ।
ଘୀଷ୍ମ ବାଡ଼ି ବିଷ୍ଣୁଙ୍କ ସମୀପେ ନାନା ପୁଷ୍ପ ।
ଦେଇ ପୂଜା କଲେ ହୁଅଇ ନିଷ୍ପାପ ।
ତହୁଁ ସ୍ୱର୍ଗଲୋକେ ବସଇ ସୁଖେ ଯାଇ ।
ଏହା ଛଡ଼ି ଯାଗ କରନ୍ତୁ ବାଇ । ୫୨୭ ।
ଶିଷ୍ୟ ବୋଇଲେ ହେ ଅସମସ୍ୟ ହାଲେ ।
ହିଂସା କର୍ମ କରି ପୋଷିବ ଜୀବ କଲେ ।

ଯେତେବେଳେ ବ୍ୟକ୍ତି ଅଲଗା ହୋଇଯିବ ।
ତେତେବେଳେ ହିଂସା କର୍ମରୁ ଛାଡ଼ିବ । ୫୨୮ ।
ପାପ କଥା ଆଶ୍ରା ନ କରଇ ସାଧୁମାର୍ଗ ।
ଅଟଇ ବାଧ୍ୟ କରୁଥିବ ଧନ ବର୍ଗ । ୫୨୯ ।
କାମ, କ୍ରୋଧ, ମଦ, ମାତ୍ସର୍ଯ୍ୟ ଲୋକଙ୍କର ।
ଧର୍ମ ବୃଦ୍ଧି କାର୍ଣ୍ଣେ ହରୁଛନ୍ତି ନିରନ୍ତର । ୫୩୦ ।
ଧନ ଥିଲେ ସୁଖ ମିଳାନ୍ତି ଏ ଥାଏ ।
ଧର୍ମ କଲେ ଷୋଳ କଳା ଭୋଗ ପାଏ । ୫୩୧ ।
ଲୋକର ଧନ ଯେତେ ବଢ଼ୁଥାଏ ଗାଢ଼ ।
ତୃଷ୍ଣା ତେତେ ବଢ଼ୁଥାଏ ହେ ନରପତି । ୫୩୨ ।
ରକତ, ମୂତ୍ର, ବିଷ୍ଠା ସହିତ ଏ ଦେହ ।
ବୋଲି ଯେ ଜାଣନ୍ତି ନୁହଇ ତାର ମୋହ । ୫୩୩ ।
ମନରେ ବଚନରେ ନୟନରେ ଯାହା ।
କରିଥାଏ ଭୋଗ ହୁଅଇନ୍ତ ତାହା । ୫୩୪ ।
ସୁକୃତ, ଦୁଷ୍କୃତ ସମ୍ପ୍ରାପ୍ତ ହୋଇ ।
ପୁନଃ ପୁନଃ ଭୋଗ ହୁଅଇ ନରସାଇଁ । ୫୩୫ ।
ଦମ, କ୍ଷମା, ଧୃତିମନ୍ତ, ସତ୍ୟବାଦୀ ।
ହେଲେ ଲୋକ ସୁଖ ପାଏ ନିର୍ବିବାଦୀ । ୫୩୬ ।
ପାପ କଲେ ଯେବେ ଧନ ବୃଦ୍ଧି ହେବ ।
ଜାଣିବା ଜନ ତାହା ଦେବେ ନ କରିବ । ୫୩୭ ।

ସେ କାହାକୁ ଉପକାର ନ କରଇ ।
ସେ କାହାକୁ ଦେବାକୁ ସମର୍ଥ ନୁହଇ ।
ସତ୍‌କଥା ଯାକରେ ଈଶ୍ୱର କାରଣ ।
ମୁଁ ବଳ ତୋଳିବାର ବ୍ୟର୍ଥ ଅଟେ ଜାଣ । ୫୩୮ ।
ନ୍ୟାୟରେ ଯେଉଁ ଧନ ହେବ ପରାପତ ।
ବଢ଼ାଇବ ସେ ଧନ ଦେଇ କର ମତ । ୫୩୯ ।
ସାମର୍ଥ୍ୟକୁ ଚାହିଁ ସବୁ କାର୍ଯ୍ୟ ଯାକ ।
କରୁଥିବ ହୃଦୟରୁ ଛାଡ଼ିଦେଇ ଦକ । ୫୪୦ ।
ପାଳନା କଲେ ଭୃତ୍ୟମାନେ ତୋଷି ହୋଇ ।
ରହନ୍ତି ପାଖେ କାଟେ ଶତ୍ରୁଙ୍କୁ ପକାଇ । ୫୪୧ ।
ବ୍ରହ୍ମା ସରଜନା ରଜାଙ୍କୁ କରିଛନ୍ତି ।
ସବୁ ପ୍ରାଣୀ ପାଳିବା ପାଇଁ ହେ ନରପତି । ୫୪୨ ।
ଧର୍ମ ଥିଲେ ସବୁ ପ୍ରାଣିଏ ସୁଖ ପାଇ ।
ହଳକୁ ହରୁଥାନ୍ତି ଭୟକୁ ନ ବହି । ୫୪୩ ।
ପ୍ରଜାଏ ସୁଖ ଯେବେ ପାଆନ୍ତି ରଜା ଯୋଗ ।
ସେ ରଜାକୁ ପୂଜନ୍ତି ସ୍ୱର୍ଗରେ ସୁରମଣି । ୫୪୪ ।
ନ୍ୟାୟ-ଧନ କଡ଼ାକୁ ଅନ୍ୟାୟ-ଧନ ଶଏ ।
ଟଙ୍କା ସମ ନୋହେ ଜାଣ ନରସ୍ୱେ । ୫୪୫ ।
ନିର୍ଗୁଣ ଲୋକଙ୍କର ପିତା ପୁତ୍ର ମାତା ।
କଳଶାଦ ମଧ ନ ସବାନ୍ତି ତନ୍ତା । ୫୪୬ ।

ଲୋକମାନଙ୍କର ପରମ ଦେବତା ।
ଅଟଇ ହେ ରାଜନ ଜାତ କଲା ପିତା ।
ପିତାଙ୍କ ପ୍ରତି ମାତା ଅଧିକ ଅଟଇ ।
ଗୌରବରେ ଜାଣ ହେ ଜନକ ନରସାଇଁ । ୫୪୭ ।
ମନୁଷ୍ୟ ଜନ୍ମରୁ ଯେ ନିନ୍ଦା କରଥାଏ ।
ଧର୍ମ ତ୍ରାଣ ତାର ଦେହକୁ ଛାଡ଼ି ଯାଏ । ୫୪୮ ।
ମନୁଷ୍ୟ ଜନ୍ମ ହେଲେ ତୀର୍ଥ ବ୍ରତ କରୁ ।
ଅନ୍ତକାଳେ ଯାଇ ବସିବ ସ୍ୱର୍ଗପୁରେ । ୫୪୯ ।
ଯେତେ ଦାନ ପୁଣ୍ୟ ଜଗତରେ ଅଛୁ ।
ମନୁଷ୍ୟ ଜନ୍ମ ପାଇ ଲୋକତା କରୁଛୁ । ୫୫୦ ।
ତନ୍ତୁ, ଧନ, ଜନ, ଛାଡ଼ିଇଣ୍ଟି ନର ।
ସ୍ୱର୍ଗକୁ ଯିବା ବୁଦ୍ଧି ହୃଦରେ ଧରେ ଯଉ । ୫୫୧ ।
ଅଷମାବନ୍ତ ଲୋକ ପ୍ରତି ତ ଷମା ବନ୍ତ ।
ଲୋକର ଧରମଷ୍ଟା ଅଟଇ ପରବତ । ୫୫୨ ।
ଗାଳି ଦେଲେ, ମାଇଲେ, ବାନ୍ଧିଲେ ଯେ ପାପ ।
ନ ଛିଣ୍ଡଇ ଜାଣ ସେ ଅଟଇ ନିଷ୍ପାପ । ୫୫୩ ।
ଲୋକଙ୍କୁ ଯେ ଅବଜ୍ଞା କରଇ ତାର ନାଶ ।
ଏ ଜଗତ ମଧ୍ୟରେ ହୁଅଇ ପ୍ରକାଶ । ୫୫୪ ।
ଲୁଗାକୁ ଯେଉଁ ରଙ୍ଗେ ରଙ୍ଗୀ ସେ ସେହି ରଙ୍ଗ ।
ହେଲା ପର ହୋଏ ଲୋକରନ୍ତ ସଙ୍ଗ । ୫୫୫ ।

ସବୁକାଳେ ଦେବେ ସାଧୁସଙ୍ଗ ଇଚ୍ଛା ।
କରନ୍ତୁ ଜାଣଂ ଏ କଥା ମୋହର ବଞ୍ଛା । ୫୫୬ ।
ହଂସ ବୋଇଲେ ହେ ଅଜ୍ଞାନେ ଅବୃତ ।
ହୋଇଅଛି ଜାଣ ଏ ମଧ୍ୟ ଜଗତ ।
ମାତ୍ସର୍ଯ୍ୟ ସକାଶରୁ ନୋହୁଛି ପ୍ରକାଶ ।
ମିତ୍ରଙ୍କୁ ଛାଡ଼ୁ ଅଛୁ ପାଇ ଲୋଭ-ପାଶ । ୫୫୭ ।
ଦୁଃସଙ୍ଗ ସକାଶରୁ ନୋହୁଅଛି ସ୍ୱର୍ଗ ।
ଅନ୍ତକାଳେ ଭୋଗ କରଇ ଦୁଃଖ ଭାର । ୫୫୮ ।
ସୃଷ୍ଟି ସ୍ଥିତି ସଂହାର କରିବା କରତା ।
ବୋଲିଅନ୍ତି ନାରାୟଣ ସେ ଦେବତା । ୫୫୯ ।
ପୁଣ୍ୟ ପାପ ଫଳେ ମନୁଷ୍ୟ ଜନ୍ମ ହୋଏ ।
କେବଳ ପୁଣ୍ୟ ଫଳେ ଦେବତା ବୋଲାଏ । ୫୬୦ ।
ଜ୍ଞାନ ଶୂନ୍ୟ ହେବାରୁ ଜୀବର ହୋଇ ଜନ୍ମ ।
ହୋଇଅଛି ହେଉ ନାହିଁ ତୃପ୍ତି କାମ । ୫୬୧ ।
ଭାର୍ଯ୍ୟା, ପୁତ୍ର, ବନ୍ଧୁ ବାନ୍ଧ ସାଥୀ ପର ।
ଥାଅନ୍ତି ଅଶେଷ କରୁ ଜାଣହେ ଦଣ୍ଡଧାରୀ ॥
ଅନ୍ତକାଳେ କେହୁ ନୁହନ୍ତି କାହାର ।
ସେ କାଳେ ସାଥୀ ଏକା ସୁକୃତ ମନେ କର । ୫୬୨ ।
ଜନ୍ମ ହେଲେ ସୁଖ ମରଣରେ ଦୁଃଖ ।
ନ କରିବ ହେବ ଯେ ପଣ୍ଡିତ ଲୋକ । ୫୬୩ ।

ସ୍ୱର୍ଗ ନରକକୁ କେ ନୟନେ ଦେଖି ନାହିଁ ।
କରୁଥିବ ଧର୍ମ ଶାସ୍ତ୍ରକୁ ଅନାଇଁ । ୧୬୪ ।
ଜ୍ଞାନନିଷ୍ଠା, କର୍ମନିଷ୍ଠା ତ୍ୟାଗନିଷ୍ଠ ।
ମୋକ୍ଷରେ ଏ ତିନି ହେଁ ପ୍ରଧାନ ପ୍ରତିଷ୍ଠା । ୧୬୫ ।
ଦୈବରେ କାହାରି ନାହିଁ ଅଧିକାର ।
ବଶ୍ୱରଲେ ଅଛଇ ସେ ମୃତ୍ୟୁ ଦେବତାର । ୧୬୬ ।
ଏ ଦେହଟି ଫେନ ପରାୟେ ଅଛଇ ।
ଏହାକୁ ସ୍ଥିର ବୋଲି ଭାବ କାହିଁ ପାଇଁ । ୧୬୭ ।
ଯେଉଁ ଧନ ପାଇଲେ ତିନି ଲୋକ ତୁଚ୍ଛ ।
ହସ୍ତଗ ଜନମିବ ତା ଅର୍ଜ ବହୁ ପ୍ରୀତି । ୧୬୮ ।
ଶୁଦ୍ଧ ଶୁଭ କରମ ବିନା ମଲେ ଧନ ।
ସଙ୍ଗ ନୁହନ୍ତି ଜାଣ ହେ ନନ୍ଦନ ।
ଅଷ୍ଟମହି ମଣ୍ଡିତ ପୁର ତପଥିଲେ ।
ନ ଯାଏଟି ସେ ଜାଣ ସଙ୍ଗତରେ ମଲେ । ୧୬୯ ।
ଏ ସଂସାର-ରତ୍ନୁ ସୁକୃତ-କଭୁସ୍ତରେ ।
କଭୁରି ହୁଅଇଟି ନୁହଇ ଅନରେ । ୧୭୦ ।
ଜାଣି ଯାହା କରିବା ସେ କଥାଟି ଅଛି ।
କରୁଥିବ ମନରୁ ଦୁଃଖକୁ ବରଜି । ୧୭୧ ।
ମୃତ୍ୟୁ କେଉଁ ଦିନ ନେବଟି ଜୀବନ ।
ଏହା ଜାଣିବାକୁ ନାହିଁ କେଉଁ ଜନ । ୧୭୨ ।

ସ୍ୱର୍ଗରେ ସୋପାନନ୍ତ ମନୁଷ୍ୟ ଜନମ ।
ପୁଣ୍ୟ କଲେ ବାରୁ ହୋଇବ ପୂର୍ଣ୍ଣ କାମ । ୬୭୩ ।
କେହୁ କାହାରନ୍ତ ନୁହଇ ଈଶ୍ୱର ।
ସୁକୃତ ଏକା ମୋର ବୋଲି ମନେ କର । ୬୭୪ ।
ଧନ ଥିବା ଯାକ ଅନେକ ମିତ୍ର ହୁଏ ।
ଧନ ହୀନ ହେଲେ ମିତ୍ର ଛାଡ଼ି ଯାଏ । ୬୭୫ ।
କର୍ମ ଭୂମି ବୋଲି ଏ ମର୍ତ୍ତ୍ୟ ଜାଣି ।
ଆଚରଣ କରୁଥିବ ପୁଣ୍ୟ ଶ୍ରେଣୀ । ୬୭୬ ।
ଗଳ୍ପ କଥାକୁ ଯେ କରୁଥାଏ ଶ୍ରେଷ୍ଠ ।
ତାକୁ କେହୁ ନ ବୋଲନ୍ତି ଭଲ ଲୋକ । ୬୭୭ ।
ଯଉବନ, ସୁନ୍ଦରପଣ, ଧନ, ଭହୁ- ।
ଠାବେ ପଣ୍ଡିତେ ନ କରନ୍ତି ଯତ୍ନ । ୬୭୮ ।
ବଳା ହେଲା ଲୋକଙ୍କୁ ରୋଗ ନ ଉବଇ ।
ଏ ସକାଶୁ ସଂପତ୍ତିରେ କାର୍ଯ୍ୟ ନାହିଁ । ୬୭୯ ।
ଜନ୍ମ ମରଣକୁ ଥିଲେ ଅଉଷଧ ।
ମର୍ତ୍ତ୍ୟ ଲୋକେ ହେଉ ଥାଆନ୍ତେ ବିବୁଧ । ୬୮୦ ।
ଭୋଗ କରିବାକୁ ସବୁରି ଇଚ୍ଛା ଥାଏ ।
ବିଧାତା ଯା କରୁଥାଏ ତା ହେଉଥାଏ ।
କେ ଘୋଡ଼ା ଚଢ଼ୁଅଛି, କେ ଘୋଡା ପରଢ଼ା ।
ଘୋଡା ବାଗ ଧରି ଆଗରେ ହୋଏ ଛିଡ଼ା । ୬୮୧

ଧନ ଥାଇ ଯେତ ଖଣ୍ଡ ଘରେ ଭକ୍ଷି ।
ତାଙ୍କ ମୁଖ ଦେଖି ହେଉଥାନ୍ତି ଦୁଃଖୀ ।
ଏହୁ ସଦାଚାରୁ ଘୋର ସବୁ କଥା ।
ଜୀବନା ତଳ ବୃକ୍ଷ ଫେଡ଼ିବେ ମନ ବ୍ୟଥା । ୫୮୨ ।
ଏ ତଳ ଲୋକେ ଯେତେ ପ୍ରାଣୀ ରହୁଛନ୍ତି ।
ସତ୍ୟର ଚାରି ପାଦ ବୃକ୍ଷ ଅଟନ୍ତି । ୫୮୩ ।
ନାରାୟଣ ଦେବଙ୍କ ଶରଣ ତୁମ୍ଭେ ପଶ ।
ସେହୁ ପୁଣି ତୁମ୍ଭଙ୍କୁ ଦେବେ ସ୍ୱର୍ଗ ବାସ । ୫୮୪ ।
ବିଷ୍ଣୁଙ୍କୁ ସେବା କରି ପାଇବେ ବ୍ରହ୍ମଲୋକ ।
ଏଣୁ ଧର୍ମ ଜାଣ ଅଟଇ ଅଧିକ । ୫୮୫ ।
ପଞ୍ଚ ମହାଭୂତରେ ରହିଲେ ଆତ୍ମା ଯାଇ ।
ଜନ୍ମ ହେଲା ବୋଲି ବଚନ ବାହାରଇ ।
ସେହି ଅମୂର୍ତ୍ତିକ ବୋଲଇ ସଂକର୍ଷଣ ।
ବିଷ୍ଣୁ ବୋଲି କହି ନାରଦ ଋଷି ଜାଣ ।
ପ୍ରଳୟରେ ପ୍ରାଣି ଏ ସଂକର୍ଷଣ ଦେହେ ।
ରହନ୍ତି ଜାଣ ନ ପଡ଼ ତୁମ୍ଭେ ମୋହେ । ୫୮୬ ।
ସୂର୍ଯ୍ୟଙ୍କର ଉଦୟ ଅସ୍ତ ହେଲା ପର ।
ସୃଷ୍ଟି ସଂହାରକ ପାଳକ ତପସ୍ୱୀ । ୫୮୭ ।
ଯେଉଁମାନେ ବିଷ୍ଣୁଙ୍କୁ କରୁଥାନ୍ତି ଧ୍ୟାନ ।
ସୂର୍ଯ୍ୟ ଦ୍ୱାର ହୁଅନ୍ତି ଜାଣ ତପୋଧନ । ୫୮୮ ।

ଏକାନ୍ତ ଭକ୍ତିରତ ହୋଇଲେ ମୋକ୍ଷ ଯାକ ।
ସତ୍ୟ ଯୁଗ ହୈବ ହେ ଅବନୀ ନାଥହି । ୪୮୯ ।
ନାରାୟଣଙ୍କର ଅନୁଗ୍ରହ ଥିଲେ ।
ସାତ୍ତ୍ୱିକ ଧର୍ମ ଲୋକ ଆଚରଇ ଭଲେ । ୪୯୦ ।
ଯେ ଯେଉଁ ଧରମକୁ ଆଚରଣ କରେ ।
ସେ ଧର୍ମକୁ ସେ ବଡ଼ ଘେନଇ ମନରେ । ୪୯୧ ।
ରାଜା ଲୋକ ପାଳ, ଭୃତ୍ୟ ଅଙ୍ଗୀକାରୀ ।
ହୋଇଲେହିଁ ଧର୍ମ ଅଛି ବୋଲି ପାଇ । ୪୯୨ ।
ଲକ୍ଷ୍ମୀ ବୋଇଲେ ଗୋ ଯାହା ପଚ୍ରୁଛ ।
ତା କହୁବା ଶୁଣ ହୃଦ କରି ସ୍ଥିର ।
ସତ୍ୟବାଦୀ, ଅନଳସ, ଅକ୍ରୋଧନ ।
କାର୍ଯ୍ୟଦକ୍ଷ, କୃତଜ୍ଞ, ଜିତେନ୍ଦ୍ରିୟ, ଜନ ।
ମାନଙ୍କର କାଙ୍କରେ ଥାଏ ମୁଁ ନିରତ ।
ମୋତେ ସେ ରକ୍ଷିଥାନ୍ତି ଏହା ଏ ବରତେ । ୪୯୩ ।
ଅକର୍ମଶୀଳ, ନାସ୍ତିକ, କୃତଘ୍ନ, ଶଳ ବୃତ୍ତ ।
ସଙ୍କରକାରୀ, ଘୋର, ଅଛନ୍ନଚରିତ୍ର ।
ଏମାନଙ୍କ ଠାରେ ନ ରହେ ମୁଁ କେବେ ।
ମତେ ସେ ରକ୍ଷି ନ ପାରନ୍ତି ଜାଣ ସ୍ତବେ । ୪୯୪ ।
ପ୍ରାଣୀନାଶ, ଚୌର୍ଯ୍ୟ ପରସ୍ତ୍ରୀ ଗମନ ।
ଏ ତିନୋଟି କାୟିକ ପାପ ବୋଲି ଘେନ ।

ଦୁଷ୍କଥା, ନିଷ୍ଠୁରତା, ଶଠ, ମିଥ୍ୟାଭାଷା ।
କଥା ବାଚନିକ ପାପ ଦେ ଦଣ୍ଡ ଧାସ୍ତ ।
ପର ଦ୍ରବ୍ୟ ସ୍ପୃହା, ଅନିଷ୍ଟ ଚିନ୍ତନ ।
ନାସ୍ତିକତା, ମାନସ ପାପ ଏ ବୋଲି ଜାଣ ।
ଶୁଭ କର୍ମେ ଅରକ୍ତ ଅତିଥିଙ୍କ ପୂଜା ।
ଯେଉଁ ଲୋକ କରେ ସେ ସ୍ୱର୍ଗେ ପାଏ ପୂଜା । ୫୧୬ ।
ମଙ୍ଗଳାଚାରଯୁକ୍ତ, ଧୀର, କ୍ଷମାବନ୍ତ ।
ପରଦାର, ମଦ୍ୟ, ମାଂସ ବର୍ଜବ୍ରତ ।
ଆଶ୍ରମ, କୂପ, ଦେଷ, ନଗର କାରକ ।
ବସ୍ତ୍ର, ଆଭରଣ, ଅନ୍ନାଦ ଦାୟକ ।
ସର୍ବ ହିଂସା ନିବୃତ୍ତି, ସହସ୍ରଭକ୍ତ ।
ଜିତେନ୍ଦ୍ରିୟ, ମାତା ପିତାଙ୍କ ସେବକ ।
ଭ୍ରାତୃ ସ୍ନେହୀ, ରସ, ବୀଜ, ଧାନ୍ୟ ଦାତା ।
ସୁବର୍ଣ୍ଣ, ଗାଈ, ଯାନ, ବାହାନ, ବସ୍ତ୍ର ଦାତା ।
ବଳବନ୍ତ, ଅଶ୍ୱ, ଗୃହ, ଭୂମିଦାତା ।
ସର୍ବ ଭୂତାଶ୍ରୟ, ଅସଙ୍ଗ, କୃପକର୍ତ୍ତା ।
ଏମାନେ ମଲେ ସ୍ୱର୍ଗେ ପାଆନ୍ତି ପୂଜା ଯାଇ ।
ଏ କଥାରେ ରାଜନ ସନ୍ଦେହ କିଛି ନାହିଁ । ୫୧୭ ।
ଅଙ୍କ, ଲୋଷ୍ଠା, ଜଡ଼ ପଦାର୍ଥ ଯେ ଖାଏ ।
ବସିଲା ଠାରେ ସ୍ୱପ୍ନେ ସେ ବ୍ରହ୍ମହତ୍ୟା ପାଏ । ୫୧୮ ।

ବିପତ୍ତିରେ ଲୋକଙ୍କୁ ଦୟା କରିବାର ।
ଏହାକୁ ବର୍ଦ୍ଧମାନ ରାଜନ ମନେ କର । ୫୯୯ ।
ଦରିଦ୍ର ଲୋକର ଯେ ଦରିଦ୍ରତା ହରେ ।
ତା ସୁକୃତ କହିଲେ ନୋହିବ ବଚନରେ । ୬୦୦ ।
ଦ୍ରବ୍ୟ ସମ୍ପତ୍ତିକୁ ବ୍ରାହ୍ମଣ ଯେବେ ହରେ ।
ତାହାର ମୋହ ଘେନି ପଡ଼ଇ ନରକରେ । ୬୦୧ ।
ଭୀଷ୍ମ ବୋଇଲେ ହେ ଅନ୍ନ, ଜଳ ଦାନ ।
ଦାନ ଯା କରେନ୍ତି ଅଟଇ ମଣ୍ଡନ । ୬୦୨ ।
ସ୍ତ୍ରୀ, ଶିଷ୍ୟ ବିନା ଆନ ଦେବେହେ ମାଡ଼ ।
ମାଇଲେ ରାଜନ ହେ ହୁଅଇ ଦୋଷ ବଡ଼ । ୬୦୩ ।
ଅଶୁଦ୍ଧ ଦ୍ରବ୍ୟ ଲୋକ ଶୁଦ୍ଧ ବୋଲି ଆଣି ।
ଦେଲେ ତାହା ଘେନିଲେ ଦୋଷରେ ନ ଘେନି ।
ଯେଉଁ ଲୋକ ହୁଅଇ ସେ ଲୋକ ଯାଏ ନାଶ ।
ଘେନି ବା ଲୋକରନ୍ତି ବଢ଼ଇ ଆୟୁ ଯଶ । ୬୦୪ ।
ସତ୍ୟକୁ ଆଚରଣ ମାନସ ତୀର୍ଥେ ସ୍ନାନ ।
କରିବ ଯେ ହୋଇବ ଜାଣିବାବନ୍ତ ଜନ । ୬୦୫ ।
ମମତା ଅହଙ୍କାର ଯାହା ଠାରେ ନାହିଁ ।
ତୀର୍ଥ ବୋଲି କର ତାହାଙ୍କୁ କହି । ୬୦୬ ।
ଇନ୍ଦ୍ରିୟ ନିଗ୍ରହକୁ ଲୋକର ତୀର୍ଥ ସ୍ନାନ ।
ସବୁ ନୋହେ ଜାଣହେ ପାଣ୍ଡବ ରାଜନ । ୬୦୭ ।

ମନ ଶୁଦ୍ଧି ତୀର୍ଥ ଶୁଦ୍ଧି ତ ଜ୍ଞାନ ଶୁଦ୍ଧି ।
ଏଥିର ଉପାୟ କରି କହୁଛନ୍ତି ସୁଧୀ । ୨୦୮ ।
ଅନ୍ନ ଦାନ ନ ଦେବା ଧନଟିତ ବ୍ୟର୍ଥ ।
କରି ମଣୁଥିବ ଯେ ଦେବ ଜଗନ୍ନାଥ । ୨୦୯ ।
ଯୁଧିଷ୍ଠିର ବୋଇଲେ ଅହିଂସା ଇନ୍ଦ୍ରିୟ- ।
ସଂଯମ ତପ ଗୁରୁ ସେବାରେ କେ ଶ୍ରେଷ୍ଠ ? ॥
ବୃହସ୍ପତି ବୋଇଲେ ଧର୍ମର ଦୁଆର ।
ଏ ସମସ୍ତେ ଅଟନ୍ତି ଅହେ ଯୁଧିଷ୍ଠିର ।
ଏଥିରେ ଯେ ଅହିଂସା ବ୍ରତ କରୁଥାଏ ।
ତାର ପୁଣ୍ୟ କହିଲେ ନ ସରେ ସ୍ୱପ୍ନେ । ୨୧୦ ।
ଆପଣା ପରି ପର କଥା ଯେ ଘେନଇ ।
ମହାପୁଣ୍ୟବନ୍ତ ବୋଲନ୍ତି ତାଙ୍କୁ କହି । ୨୧୧ ।
ସୁଖ ଦୁଃଖ ପ୍ରିୟାପ୍ରିୟ ଲାଭାଲାଭ ।
ଦାନରେ ଜନ ପରି କରିବ ପରେ ମତି । ୨୧୧ ।
ଭୃଗୁ ବୋଇଲେ ହେ ଦେହରେ ବ୍ରହ୍ମ ଥାଇ ।
ସୁଖ ଦୁଃଖ ଗନ୍ଧ ରସକୁ ସେ ଘେନଇ ।
ଦେହଟିରେ ଯେଉଁ ଜୀବ ଅଛି ରହି ।
ପଦ୍ମରେ ଜଳ ବିନ୍ଦୁ ପ୍ରାୟେ ଜାଣ ସେହି ।
ଏ ସବାଙ୍କୁ କହୁଥାଏ ଦେହ ନାଶ ।
ଗଲେ ଜୀବ କେବେ ନୁହଇ ନାଶ ଧ୍ୱଂସ ।

ଛାଡନ୍ତେ ଦେହ ଆନ ଦେହକୁ ଜୀବ ଧରେ ।
ଯାହା ଅର୍ଜିଥାଏ ତା ଭୋଗ କରେ । ୬୧୩ ।
ଶତ ସମ୍ବତ୍ସର ତପର ସମାନ ।
ମାଂସ ଛାଡ଼ିବାର ସ୍ରଜନ ମନେ ଘେନ । ୬୧୪ ।
ବୃଷ ମୂଳେ ବହୁ ହୋଇ ନିରାହାର ।
ଲଭେ ଯେ ଈଶ୍ୱରଙ୍କ ମୁକ୍ତି ତାହାଁର । ୫୧୬ ।
ପାଣି, ବାତ ପତ୍ର ଫଳ ମୂଳ ଖାଇ ।
ଯେ ରହଇ ଋଷି ବୋଲନ୍ତି ତାକୁ କହି । ୬୧୬ ।
ଗ୍ରୀଷ୍ମ କାଳେ ଅଗ୍ନି ଶୃଘ ବାନ୍ଧ ଜାଡୁ ।
ଯେ ତପ କରେ କଷ୍ଟ ଦୁଃଖକୁ ନ ଗଣ ।
ସୂର୍ଯ୍ୟ ଦେବତାଙ୍କୁ ଅନାଇ ନୟନେ ।
ସେହନ୍ତି ଅପି ପୂଜା ଲଭଇ ମର୍ତ୍ତ୍ୟ ଜନେ । ୬୧୭ ।
ସବୁ ପ୍ରାଣୀ ଠାରେ ଦୟା କରୁଥାନ୍ତି ।
ଶୀଳବନ୍ତ ହୋଇ ହନକୁ ହରନ୍ତି ।
ପରଧନ, ପରଦାର, ପରକଥା ।
ପଡ଼ିଲେ ହୃଦୟରେ ଘେନୁଥାନ୍ତି ବ୍ୟଥା ।
ଧର୍ମ ଲବ୍ଧ ଅର୍ଥ ଅର୍ଜିଣ ଭୁଞ୍ଜନ୍ତି ।
ମାତୃ ପିତୃ ଠାରେ ଭକତ କରନ୍ତି ।
ବୈର ବୃତ୍ତ କଥା ନ ଶୁଣନ୍ତି କାନେ ।
ଥାଉ ତା ଆଚରଣ କରିବାର ହନେ ।

ଅପଣାର ହାତେ ଭଳ ହୋଇ ଶୁଭୁ କାଳେ ।
ଭୋଗଙ୍କୁ କରୁଥାନ୍ତି ତାଙ୍କୁ ଧର୍ମ ବୋଲେ ।
ଏ ଲକ୍ଷଣ ଗୋଷ୍ଠ ଗୋଷ୍ଠକେ ଯେ ଯୁତ ।
ହୁଏ ଅନ୍ତେ ତାଙ୍କୁ ସ୍ୱର୍ଗ ପଶୁପତ । ୬୧୮ ।
ଅନ୍ଧ, ମୂକ, ବଧିର, ଅକ୍ଷମି ଜନରେ ।
ଗଣିବ ବେଦବଦ ବ୍ରାହ୍ମଣ ଗଣରେ । ୬୧୯ ।
ଦୀନ, ଅନ୍ଧ ଲୋକଙ୍କୁ ନ ଦଏ ଯେ ଦାନ ।
ମଲେ ନରକରେ ଲଭଇ ପତନ । ୬୨୦ ।
ସତଧର୍ମଗୃହିଣୀ ହୁଅ ଭର୍ତ୍ତା ଭୁଲେ ।
ବର୍ଣ୍ଣ କାଳେ ବୋଲଇ ପିତା ଧର୍ମ ବୋଲେ ।
ଏହା ତ ଜାଣି ସ୍ତ୍ରୀଏ ଭର୍ତ୍ତାଙ୍କୁ ସେବବ ।
ଭର୍ତ୍ତା ବିନା ତାହାର ନାହିଁ ଅନ୍ୟ ଦେବ ॥
ସକାଳୁ ଉଠି ଭର୍ତ୍ତା ପାଦ ଯେ ସେବଇ ।
ଥିବାର ସବୁ ବ୍ୟବହାରଙ୍କୁ ଛାଡ଼ି ଦେଇ ॥
ଭର୍ତ୍ତା ଯେବେ ଭୂଷଣ କରଇ ହରଣ ।
ଛାଡ଼ି କରି ସେ ମଧ୍ୟ ହୁଅଇ ବରଷ ।
ଭର୍ତ୍ତା ମନ ଜାଣି କରଇ ବେଭାର ।
ପତିବ୍ରତା ବୋଲନ୍ତି ତାହାଙ୍କୁ ମନେ କର ।
ଘରକୁ ଲିପଇ ଯେ ମାର୍ଜନା କରଇ ।
ଦୀନଜନ, ଅନ୍ଧ ଠାରେ ଦୟା ବହଇ ।

ଦେହୁଥାଏ ଘରେ ଥାଏ ଯେଉଁ ଅନ୍ନ ।
ପୁତ୍ରବନ୍ଧୁଙ୍କରେ ସେ ବୋଲାଇ ଧର୍ମ । ୬୨୧
ଦରିଦ୍ର, ବ୍ୟାଧିମନ୍ତ ରୋଗୀ ଦେଲେ ପଛ ।
ଅଟଇ ସେହୁ ଯୁବଇର ଗଛ । ୬୨୨ ।
ଅଧର୍ମରେ ସସ୍ପୃ ଧର୍ମରେ ଅସସ୍ପୃ ।
ହୁଅଇ ଦେଖୁ ଥାଇ ଶାସ୍ତ୍ରକୁ ତନସ୍ପୃ । ୬୨୩
ଅହିଂସା ଦାନ ସତ୍ୟ ଅକ୍ରୋଧ ଯେ ଅଚାର ।
ଧର୍ମ ତନ୍ତ୍ର ବୋଲି ବୋଲାଏ ସଂସାରେ । ୬୨୪
ଦାନେ ଭୋଗୀ ବୃଦ୍ଧ ସେବାରେ ମେଧାବୀ ।
ଅହିଂସାରେ ଦୀର୍ଘାୟୁ ବଦନ୍ତି ଜନେ ସବ । ୬୨୫ ।
କପଟ କଥା ଯାକ ମୃତ୍ୟୁର କାରଣ ।
ଅକପଟ କଥା ମୋକ୍ଷ ବୋଲି ଜାଣ । ୬୨୬ ।
ମମତା ଯେ କରଇ ପାଏ ସେ ସଂସାର ।
ମମତା ହୀନ ଲୋକ ହୁଅଇ ବ୍ରହ୍ମାଙ୍କର ।
ସଂସାରରେ ଥାଇ ମମତା ଯାର ନାହିଁ ।
ସଂସାର ତାକୁ ବାଧି ନ ପାରେ ନରସାଇଁ । ୬୨୭ ।
ପୁଣ୍ୟ କର୍ମୀ ସ୍ୱର୍ଗରେ ବସି ଦଶନ୍ତି ।
ନ ଜାଣି ଲୋକେ ତାଙ୍କୁ ଭାଗ୍ୟ ବୋଲନ୍ତି । ୬୨୮ ।
ବ୍ରହ୍ମଚର୍ଯ୍ୟ, ଦାନ, ପ୍ରଣାମାଚରଣ ।
ପ୍ରାଣୀ ଦୁଃଖ ହରଣ, ବ୍ରହ୍ମଙ୍କ ଧାରଣ ।

ମାତୃ ପିତୃ ଶୁଶ୍ରୂଷା, ଶୌଚ, ବ୍ରତ, ଦୟା ।
ଶୁଭ କର୍ମେ ପ୍ରବୃତ୍ତ ଇନ୍ଦ୍ରିୟ ସଂଯମ ।
ଅନୃଶଂସ୍ୟ ପରସ୍ୱ ଅଦାନ ବର୍ଜନ ।
ଦୟା, ଗୁରୁଦେବ, ଅତିଥି ପୂଜନ ।
ଏମାନ ଯେ କରଇ ମୋକ୍ଷ ଧର୍ମ ସେହି ।
ଜାଣଇ ଏ କଥାରେ ସନ୍ଦେହ ତ ନାହିଁ । ୭୨୯ ।
ସ୍ୱର୍ଗ ଦୁଃଖ ଅନିତ୍ୟ ବୋଲି ଯେ ଜାଣଇଁ ।
ସଂସାର ସାଗରୁ ସେ ଅଳଭ୍ୟେ ତରଇ । ୭୩୦ ।
ଯାହାକୁ ଯା ମିଳଇ ତହିଁରୁ ସେ ଦଶାଂଶ ।
ଦେଲେ ସ୍ୱର୍ଗେ ପୂଜା କରନ୍ତି ସୁରଈଶ । ୭୩୧ ।
ନ୍ୟାୟ ଲବ୍ଧ ଦାନକୁ ଅନ ଦାନମାନ ।
ନୁହଇ ହେ ଦ୍ୱିଜବରଷ୍ଟ ସମାନ । ୭୩୨ ।
ନ୍ୟାୟାର୍ଜିତ ଧନ ପାଇ ଯେବେ ଦେଲେ ।
ଯେତକ ସ୍ୱର୍ଗରେ ବୋଲିଥାଇ ଫଳ । ୭୩୩ ।
ସତ୍ୟ, ସନ୍ନ, ଯାଜ, ଅଧ୍ୟନ, ଦ୍ୱେଷୀ ଭାବ ।
ଅସ୍ପୃହ ମିଶି ଷଡ଼ ଗୁଣ ଏ ନରଦେବ । ୭୩୪ ।
ଆଳସ୍ୟ, ନିଦ୍ରା, ଭୟ, କ୍ରୋଧ, ଦୀର୍ଘ ସୂତ୍ର ।
ମୃଦୁତା ମିଶି ଷଡ଼ ଦୋଷ ଯେ ବଦତ । ୭୩୫ ।
ବଚନ, ମନ, ଜିହ୍ୱା, ଉଦର, ଉପସ୍ଥ ।
ଉଦବେଗ ଯେ ସହେ ସେ ପାଏ ବ୍ରହ୍ମପଥ । ୭୩୬ ।

ଅଧର୍ମ ଜନ୍ମ ଲୋକ ସଂପତ୍ତିକୁ ପାଏ ।
ଶତ୍ରୁ ଭଣି ପ୍ରାନ୍ତେ ସମୂଳେ ନାଶ ଯାଏ । ୬୩୬ ।
ପରଷ୍ପରେ ମତ୍ସ୍ୟ ସବୁଠାରେ ହିଂସା ।
ନହୁଅନ୍ତୁ ଦୁଃଖ ଦେହ ରୁଚି ମହାଯଶା ।
ଭୁଜନ ଲୋକମାନେ ଅତଏ ଘୋର କର୍ମ ।
ଦଣ୍ଡନୀତି ତା ପୁଣି ବଡ଼ କରଇ ଧର୍ମ ।
ଧର୍ମ ଅଧର୍ମରେ ଯୁକତ ହୋଇବାରେ ।
ଦୁଃଖ ନହୁଅନ୍ତୁ କର୍ମ ଏ ସଂସାରେ ।
ଅପଣା ଧର୍ମେ ରତ ହୋଇଛନ୍ତି ଯେଉଁ ନର ।
ତା ଠାରୁ ଧର୍ମବନ୍ତ ନାହିଁ ଅନ୍ୟ ନର । ୬୩୮ ।
ଚକ୍ଷୁ ରୂପ, କର୍ଣ୍ଣି ଶବଦ, ନାଶା ବ୍ୟସ ।
କାୟା ତପ, ଚର୍ମ ସ୍ପର୍ଶରେ ଏ ବାସ ।
ଏ ପାଞ୍ଚେ ଇନ୍ଦ୍ରିୟ ଯାହାର ଅଯତ୍ର ।
ବ୍ରହ୍ମଜ୍ଞାନ ତାହାର ଅଟଇ ଜରଗତ । ୬୩୯ ।
ପ୍ରାଣୀଙ୍କର ଯେବେ ନଟିବା ଇଚ୍ଛା ହେବ ।
ଅଗ ଭଗୁର୍ଦ୍ଧି କଷ୍ଟକୁ ଭାବିବ ।
ତହିଁ ପଛେ ଦୁଃଖ ଦୁଃଖକ ଧାଇ ।
ବ୍ରହ୍ମଙ୍କ ଭାବନାଟି କରିବ ପ୍ରୀତି ବହି । ୬୪୦ ।

**ସମାପ୍ତ**

---

ବ୍ରହ୍ମପୁର ଷ୍ଟୋରପ୍ରେସ୍‌ରେ ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ମୁଦ୍ରିତ ।

# ଶୁଦ୍ଧ ପତ୍ର

| ପୃଷ୍ଠା | ପଙ୍କ୍ତି | ଅଛି | ହେବ |
|---|---|---|---|
| ୧୨ | ୧୧ | ପଲାଏ | ପଳାଏ |
| ୧୮ | ୯ | କୃପାଣ | ପଣ |
| ୧୯ | ୨୦ | ପୃର୍ବେ | ପୂର୍ବ |
| ୩୨ | ୪ | ଅଶ୍ରେପିତା | ଅଶ୍ରେଗିତା |
| ୩୨ | ୫ | ଅର୍ଥକାସ୍ଥ | ଅର୍ଥବସ୍ଥ |
| ୩୫ | ୧୦ | ଘଣ୍ଟ | ଘୋଣ୍ଟ |
| ୩୬ | ୧୧ | ଅମ୍ନାଜ୍ଞାନ | ଅମ୍ବଜ୍ଞାନ |
| ୪୨ | ୬ | ବ୍ରହ୍ମାଠାରେ | ବ୍ରହ୍ମଠାରେ |
| ୫୦ | ୧୫ | ଗଘବ | ଗରବ |
| ୬୬ | ୩ | ନୋହଇ ଖିରୁ ନୋହ | ବନ୍ଧ ଖିରୁ |
| ୭୫ | ୧୨ | ନେଜବେତ୍ତା | ବେଦବେତ୍ତା |
| ୭୭ | ୭ | ବ୍ରହ୍ମାଙ୍କୁ | ବ୍ରହ୍ମଙ୍କୁ |
| ୭୭ | ୧୫ | ସବଚ୍ଛିନ୍ନେ | ଅବଚ୍ଛିନ୍ନେ |
| ୮୬ | ୧୨ | ଜବୃଊ | ଜବୃତ |
| ,, | ୨୦ | ବାହାନ | ବାଦନି |
| ,, | ୨୧ | ଅଢ୍ୟ | ଅର୍ଘ୍ୟ |
| ୮୭ | ୭ | ଗଘବ | ଗରବ |
| ୯୦ | ୭ | ଅଷମି | ଅଷମ |
| ୯୧ | ୧୫ | ବ୍ରହ୍ମାଙ୍କର | ବ୍ରହ୍ମଙ୍କର |

## ବିନା ମୂଲ୍ୟରେ ବିତରଣ

———:o:———

ନିମ୍ନଲିଖିତ ଠିକଣାକୁ ୫୦/ ମୁଦ୍ରା ସହିତ ଲେଖିଲେ ପୁସ୍ତକ ଡ଼ାକରେ ପଠାଯାଏ ।

ଶ୍ରୀମାନ୍ ଭାଗୀରଥି ସାହୁ

ସବ୍‌ରେଜିଷ୍ଟ୍ରାର

ବୋଇରାଣି (ଗଞ୍ଜାମ)

Printed at
THE STORE PRESS,
Berhampur.